ପ୍ରକାଶକ

ସଂପାଦକ,

କଳାସପୁର ସାରସ୍ୱତ ସଂଘ,

କଳାସପୁର, କଟକ ।

ପ୍ରଥମ ସଂସ୍କରଣ— ୧,୦୦୦

ସାର୍ବଭୌମ ଭକ୍ତ ସମ୍ମିଳନୀ,

୧୯୮୧



ମୁଦ୍ରାକର—ଶ୍ରୀକୃଷ୍ଣ ପ୍ରିଣ୍ଟିଂ ପ୍ରେସ, ଅଳ, ଜି.-କଟକ ।



## ॥ ଅର୍ଘ୍ୟ ॥



ପ୍ରସାଦୀ ସୁମନେ ଭକ୍ତି ପଙ୍କାଥାଳି,
ଶ୍ରୀଗୁରୁ ଚରଣ କମଳେ ପଖାଳି ।
ଗୁରୁ ପରସାଦେ ପଚିଳନ ହୃଦ,
ସେବା ଦାସ ପଦେ ଯାଚେ ଠାବ ଦଅ ।

# ଉତ୍ସର୍ଗ



**ଦେବ !**

ଗଙ୍ଗା ଜଳେ ଗଙ୍ଗା ପୂଜା କଲାପରି
ତୁମରି ପ୍ରସାଦେ ତୁମ୍ଭଙ୍କୁ ଅର୍ପିଲି ॥ ୧ ॥
ଭ୍ରମି ସାରସ୍ୱତ ଗହନ କାନନେ,
ବଚନ ସୁମନ ତୋଳିଛି ଯତନେ ॥ ୨ ॥
ଭାବ ଡୋରେ ଗୁନ୍ଥି ସୁମନର ମାଳା,
ସୁମନେ ଅର୍ପିଲି ହୋଇ ଭାବେ ଭୋଳା ॥ ୩ ॥
ତୁମରି ଦତ୍ତବ ମାଳାକାର ମୁହିଁ,
ଏଥିରେ ମୋହର ବାହାଦୁରୀ ନାହିଁ ॥ ୪ ॥
ଯେଠାରେ ଯେଫୁଲ ହାତରେ ପଡ଼ିଛି,
ସେଠାରେ ସେ ଫୁଲ ଗୁନ୍ଥି ଦେଇଅଛି ॥ ୫ ॥
ପ୍ରଭୁ ପଦେ ଦୋଷ ନ୍ୟୁନ୍ତି କ୍ଷମା କରି,
ଚରଣେ ଦେଜନ୍ତୁ ହୃଦୟୁ ବହାରି ॥ ୬ ॥
ପରାଣବନ୍ଧୁ ହେ ସର୍ବଦେ ଦେଜିବ,
ଗୁରୁପ୍ରସାଦର ମହତ ରଖିବ ॥ ୭ ॥
ମନଜାଣି ସେବୁଥିବ ପଦ ଦୁଇ,
ଗୁରୁ ପରସାଦ ଏତିକି ମାଗଇ ॥ ୮ ॥
ଶ୍ରୀପଦ ସେବନ୍ତୁ ଇତର କାମନା,
ନ ଜାଗୁ ପରାଣେ ଦେଜ ମୋ ପ୍ରାର୍ଥନା ॥ ୯ ॥

ଦୀନ ସେବକ
ଗୁରୁପ୍ରସାଦ



# ଓଁ ଜୟ ଗୁରୁ



## ଶ୍ରୀମତ୍ ସ୍ୱାମୀ ନିଗମାନନ୍ଦ ପରମହଂସ ସରସ୍ୱତୀ

ଶ୍ରୀ କାଳିକା ପଦାମ୍ବୁଜେ ମଜେ ମନ ଯା'ର
ମହତ ଭବରେ ପୂର୍ଣ୍ଣ ହୃଦୟ ତାହାର ॥
ତମ ଆଦି ଗୁଣ ନୟ ବିଘ୍ନନେ ହୋଇଛି,
ସ୍ୱାର୍ଥ, ଅର୍ଥ, ବ୍ୟର୍ଥ ଜ୍ଞାନେ ଆନନ୍ଦ ଲୁଣ୍ଠିଣି ॥
ମିମାଂସା ଦର୍ଶନ ଶାସ୍ତ୍ର କରି ପରିହା'ର,
ନିତ୍ୟ ଆତ୍ମାରସହ କରେ ରସ ବିହାର ॥
ଗନ୍ଧ ଯଥା ରହେ ଫୁଲେ କାଷ୍ଠରେ ଅନଳ,
ମନେସ ବିବେକେ ତାର ବ୍ରହ୍ମ ତେଜ ବଳ ॥
ନୂତନ ସୃଷ୍ଟି ନିଜ ସୃଟ ମର-ସୃଷ୍ଟି ପାଇଁ,
ଦେଶ୍ୱର ଜୀବନ ଭୁକ୍ତି ଜ୍ଞାନ କରେ ସେହି ॥
ଦେଶ୍ୱର ଆଧାର ତାର ହୃଦୟ କନ୍ଦର,
ପରର ହିତ ନିମନ୍ତେ କାନ୍ଦେ ନିରନ୍ତର ॥
ରତ ରହେ ନିଶିଦିନ ଜ୍ଞାନ ବିତରଣେ,
ମଙ୍ଗଳ ହେଉ ଜୀବର ଏହି ଭାବ ମନେ
ହଂ, ଯଂ, ରଂ, ଳଂ, ବଂ ତତ୍ତ୍ୱ ଜ୍ଞାନେ,
ସମସ୍ତ ବ୍ରହ୍ମାଣ୍ଡ ବ୍ରହ୍ମମୟ ବୋଲି ଜାଣେ ॥
ସମଭାବ ସରଳତା ବାଳକ ଯେସନ,
ରହି ନପାରଇ କର୍ମ କରି ଏକ କ୍ଷଣ ॥
ସ୍ୱଭାବ ଦେବତା ସିଏ ବିକାର ବର୍ଜନ,
ଶିବ ବିଷ୍ଣୁର ବିଷେ ନହୁଏ ମଜନ ॥

( ନିଗମାନନ୍ଦ ଆର୍ଯ୍ୟ ଦର୍ପଣରୁ ଅନୁବାଦ )



# ❊ ସୂଚୀ-ପତ୍ର ❊



# ମନବୋଧ

ରାଗ—ରାମକେରୀ

ବିଷୟମଦେ ମତ୍ତ ହୋଇ ଗୁରୁ ଚିହ୍ନିଲୁ ନାହିଁ
ଧନ ମାନ ଯଶ ସମ୍ପତ୍ତି ଚିର ସ୍ଥାୟୀ ନୁହଁଇ ॥ ୧ ॥

ମାଟିର ଏ ଘଟ ମାଟିରେ ଦିନେ ଯିବ ମିଶାଇ,
ସେଦିନ ଏ ସୁଖ ତୋହର କିଛି ରହିବ ନାହିଁ,
ଯୋଗ ଯାଗ ଜ୍ଞାନ ତପସ୍ୟା ସାଧି ପାରିବୁ ନାହିଁ
ସହଜ ଭକତି ପଥରେ ବ୍ରହ୍ମ ଜ୍ଞାନ ମିଳଇ ॥ ୨ ॥

ଗୁରୁ ଗୋବିନ୍ଦଙ୍କ ସେବାରେ ତୋର ଧନ ଜୀବନ,
କର ସମର୍ପଣ ଖୁସିରେ ସୁଖେ କଟାଅ ତୁ ଦିନ ॥ ୩ ॥

ଗୁରୁ ଯେବେ ମାରେ ଗୋଇଠା ଜଳେ ଅନ୍ଧାରେ ଦୀପ,
ଗୁରୁ ପଦ ତଳେ ଲଭିଲେ ଜାତ ହୁଏ ବିବେକ ॥ ୪ ॥

ମୋର ବୋଲି ଯାକୁ ମଣିଛୁ ସବୁ ସୁଖର ସାଥୀ,
ଜୀବ ଯିବାବେଳେ ଦେଖିବୁ ଗୁରୁ ଜାଳିବେ ବତୀ ॥ ୫ ॥

ଦୁନିଆର ଦୁଇ ପାଖରେ ଦେଖ ନିଆଁ ଜଳୁଛି,
କାହୁଁ ଆସି କାହୁଁ ଯିବୁରେ ଜାଣି ଅଛୁକି କିଛି ॥ ୬ ॥

ଦେହକୁ ତୁ ଆତ୍ମା ନ ମଣ ଦେହ ଆତ୍ମାର ଘର,
ଆତ୍ମା ଚାଲିଗଲେ ରହିବ ଖାଲି ଦେହର ଖୋଳ ॥ ୭ ॥

କାହୁଁ ଆସି କାହୁଁ ଯାଉଛୁ ବେଳ ଥାଉଁ ସୁମର,
ଗୁରୁ ସେବ ଜ୍ଞାନ ଲଭିଲେ ହୋଇ ପାରୁ ଅମର ॥ ୮ ॥

ଭାବୁ ଅଛ ପରା ମନରେ ତୋର ଯୁବା ବୟସ,
ଧନାକେତେ ସୁଖ କରିବୁ ବାନ୍ଧି ଅଛୁ ସାହାସ ॥ ୯ ॥

ନଭାବ ମନରେ ମରଣ ମୁଣ୍ଡପରେ ବସିଛି,
ଅଜାଣତେ କାଳ ଗ୍ରାସିଲେ ତୋର ଗୃହକା ଅଛି ॥ ୧୦ ॥

ହେତୁ ରଖି ଧରମ ଧନ ତୁଲେ ସଞ୍ଚୟ କର,
(ତାହା) ଜୀବ ଯିବା କାଳେ ହୋଇବ ତୋହର ସଙ୍ଗେ ବାହାର ॥ ୧୧ ॥

ବାଟରେ ଖରଚ କରିବୁ ଯେବେ ସଞ୍ଚିତ ଥିବ,
(ଏଥି) ଅର୍ଜିଥିବା ଧନ ସମ୍ପତ୍ତି ପର ଭୋଗ କରିବ ॥ ୧୨ ॥

ଗୁରୁ ପରସାଦ ବଚନ ଗୁରୁ ଜ୍ଞାନରେ ଧେନ,
ବେଳହୁଁ ଜଣାଇ ଦେଉଛି ପଛେ ଦୋଷ ନମଣ ॥ ୧୩ ॥



## ପ୍ରତୀକ୍ଷା

ଏଦୀନା କୁଟୀରେ ଆସିବକଥରେ ଦୀନବନ୍ଧୁ ଦୟାକର,
ସାରାଜୀବନର କାମନା ପୁରନ୍ତା ଦେଖନ୍ତି ତୋଷଣ ଭରି ॥

ନୟନ ସଲିଳେ ପଦ ପଖାଳନ୍ତ ପୋଛନ୍ତ ଲାଜ ପଣତେ,
ଭକତି ଚନ୍ଦନ ଜ୍ଞାନ ତୁଳସୀରେ ପୂଜନ୍ତ ଚରଣ ପ୍ରାନ୍ତେ ॥

ସୁମନ ସୁମନେ ହାର ଗୁନ୍ଥି ଦ୍ୟନ୍ତ ଗଳାରେ ପଡ଼ନ୍ତୁ ଲୋଟି,
ସରାଗ ସୁରାଗେ ପୂଜ ଅନୁରାଗେ ପରାଣ ଦିଅନ୍ତ ଭେଟି ॥

ଆକୁଳ ଆବେଗେ କେବେ ଭାବାବେଗେ ଶ୍ରୀ ଚରଣେ ମଥାନୋଇଁ,
ପରାଣ-ପତିଙ୍କୁ ହୃଦୟେ ଜୁଡ଼ାନ୍ତି ମନର ସାଧ ମେଣ୍ଟାଇ ॥
ମନ ତୋଷିବାକୁ ଆବେଗେ ରଚନ୍ତି ନିତି ନୂଆ ନୂଆ ଗୀତ,
ନବ ଅନୁରାଗେ ଅନୁରାଗୀ ହୋଇ ସରାଗେ ଗାଆନ୍ତି ମିତ ॥
କେବେ କେବେ ଟେରା ଅପାଙ୍ଗ ଚାହାନ୍ତି ବିଲୋକନ୍ତି ପ୍ରାଣ ସଖା,
ଚାରିଚକ୍ଷୁ ଏକ ହେଲେ ଲାଜଭରେ ତଳକୁ ଟାଳନ୍ତି ମଥା ॥
ସତେକି ସୁଦିନ ଏମାନ ଜୀବନେ ସଫଳେ ଆସିବ ବନ୍ଧୁ,
ଗୁରୁପରସାଦ ଗୁରୁପରସାଦେ ଲଭିବ ପ୍ରଣୟ ମଧୁ ॥
ଲଭି ବିଭରିବ କାନ୍ଦି କନ୍ଦାଇବ ମାତି ମତାଇବ ଆନେ,
ଗୁରୁ ଦରଶନ ଗୁରୁପରସାଦ ଲଭିବ ଗୁରୁ ନୟନେ ॥



## ପ୍ରତୀକ୍ଷା

ଜୀବନେ, କେବେ ଆସିବସେ ଦିନରେ
ଶ୍ରୀ ଗୁରୁ କରମେ ରତ ରହିଥିବ ଭୁଲି ନିଶି ଅବା ଦିନ
ଜାତି କୁଳ ଶୀଳ ମଙ୍ଗଳା ମଙ୍ଗଳ
ଧରମ କରମ ମାନ,
ହୋଇ ବିସ୍ମରଣ ରଖିବ ସ୍ମରଣ
ଶ୍ରୀ ଅଙ୍ଗ ରଙ୍ଗା ଚରଣ । ୧ ।
ସ୍ୱପ୍ନେ ଜାଗରଣେ କି ଅବା ଶୟନେ
କରିଥିବ ପ୍ରାଣଧନ,

ମନ ବଚନରେ   କି ଅବା ଶରୀରରେ
ସେବୁଥିବ ଶ୍ରୀ ଚରଣ । ୨ ।
ଦର୍ଶନେ ସ୍ପର୍ଶନେ   ଶ୍ରବଣେ କୀର୍ତ୍ତନେ
କରୁଥିବ ଆଲିଙ୍ଗନ,
ବରଜ ରଜାର   ବରଜ ବଜାରେ
କରୁଥିବ ବିଚରଣ । ୩ ।
ମରମେ ମରମେ   ସକଳ କରମେ
କରୁଥିବ ସୁମରଣ,
ମରମଂ ବରଜ   ସର୍ବାଙ୍ଗରେ ଭଜ
ହେଜୁଥିବ ହୃଦେ ନାମ । ୪ ।
ବରଜ ବଜାରେ   ହଜାର ହଜାର
ବରଜ କାମିନୀ ଗଣ,
ସେବୁଛନ୍ତି ଯାକୁ   ସେବନ୍ତି ତାହାଙ୍କୁ
କରନ୍ତେ ମନ ହରଣ । ୫ ।
ଅନୁରାଗେ ଆଶା   କରି ଅନୁସରି
କାନ୍ଦୁଛି ମୁଁ ନିଶି ଦିନ,
ବ୍ରଜବାସୀ ହରି   କେବେ ଦୟା କରି
ଦେବେ ମୋତେ ଦରଶନ । ୬ ।
ଭକ୍ତି ଗଙ୍ଗା ସ୍ନାନ   ଯମୁନା ଜଳରେ
କରିବି ଅବଗାହନ,
ଶ୍ରୀ ଗୁରୁ କରମେ   ରତି ରହୁଥିବ
କିବା ନିଶି ଅବା ଦିନ । ୭ ।



# ପ୍ରତୀକ୍ଷା

ରାଗ—ବଙ୍ଗଳାଶ୍ରୀ

ଆଉ କେତେ ଦିନେ ନୀରସ ଜୀବନେ
ହୋଇବ ପ୍ରେମ ସଞ୍ଚାର,
ଗାଇ ତୁମ ନାମ ହେବ ପୂର୍ଣ୍ଣ-କାମ
ବହିବ ପ୍ରେମାଶ୍ରୁ ଧାର । ୧ ।
ଆଉ କେତେ ଦିନେ ଆସିବ ଠାକୁର
ପାହିବ ଅମା ରଜନୀ,
ନଣି ଶେଷେ ହସି କର ପରସାଣି
ପ୍ରେମେ ତୋଳିବ ନଳିନୀ । ୨ ।
ଦିନୁ ଦିନୁ ଦିନ ଯାଉଛି ହେ ପ୍ରାଣ
ବାନ୍ଧବ ମୁଁ ଦୀନ ହୀନ,
ଆଶାରେ ଆଶାରେ ହୃଦୟ ଆଶାରେ
ନଣା କାଟୁଛି ନଳିନ । ୩ ।
ସଂସାର ଚକ୍ରରେ ଆବେଷ୍ଟି ଠାକୁର
ଭୁଞ୍ଜୁଛି ମୁଁ ଦୁଃଖ ଫଳ,
ଜ୍ଞାନ ଧନ ହରି ଇନ୍ଦ୍ରିୟ ତସ୍କରେ
କରୁଛନ୍ତି କଲବଲ । ୪ ।
କେତେ ଦିନେଆସି କର୍ମଫଳ ନାଶି
ଧରିବ ଏ ଦାସୀ କର,
ତୁମ୍ଭ ସମ ପତି ଲଭିଛି ଶ୍ରୀପତି
ମୋ ପାପ କେତେ ମାତର । ୫ ।

ବଞ୍ଚିତ ଜନରେ କାଞ୍ଚିତ କରୁଣା
ବଞ୍ଚିତ ସିନା ଠାକୁର,
ସେବା ଦାସୀ ଠାରେ କପଟ ବେଭାର
ନୁହେଁ ଉଚିତ ବସ୍ତୁର । ୬ ।
ତୁ ସିନା ଲମ୍ପଟୀ ମୁଁ ନୁହେଁ କପଟୀ
ଏକଥା ସତ୍ୟ ଅଟଇ,
ତାର ଅବା ମାର ଯାହା ଇଚ୍ଛା କର
ଚରଣ ଛାଡ଼ିବି ନାହିଁ । ୭ ।
ସ୍ୱାମୀ ମୋର ଭାବ ସ୍ୱରୂପ ଅଭାବ
ଅବତାର ମୋତେ କଲ,
ଇତରେ ଜାଣିଲେ ତୁମ୍ଭ ନିନ୍ଦା ହେଲେ
କେମନ୍ତେ ସହିବି ବୋଲ । ୮ ।
ସ୍ୱାମୀ ହେବେ ମୋର ଦୋଷ ନ କ୍ଷମିବ
କା' ଆଗେ କହିବି ଆଉ,
କ୍ଷମା ସିନ୍ଧୁ ନାମେ କଳଙ୍କ ରହିବ
ମଲା ଭଲ ଜୀଇଁ ଥାଉ । ୯ ।
କଲଭ ଜୀବନେ ଯଦି ଏ ଜନମେ
ପ୍ରାଣବନ୍ଧୁ ନ ବାସିଲେ,
ବିଫଳ ଜନମ ଜୀବନେ ଧାରଣ
ପ୍ରାଣବନ୍ଧୁ ନ ଆସିଲେ । ୧୦ ।
ନବ ଫୁଲ ସଞ୍ଜେ ଉପାସନା କୁଞ୍ଜେ
ଆସିବା ପଥକୁ ଚାହିଁ,
ବରଷ ବରଷ ବିତ ଗଲାଣିତ
ମୋହନ ଆସିଲ ନାହିଁ । ୧୧ ।

କେଜାଣି କାହିଁକି   ଆଶାୟୀ ମୋ ମନ
କହୁ ଅଛି ବାର ବାର,
ରସି ରସାଇବ   ହସି ହସାଇବ
ତୁମେ ହେ ରସିକ ବର । ୧୨ ।
ଅପରାଧ ମୋର   ଜୀବନ ଦୋଷର
ତୁମେ କରୁଣା ବାରିଧି,
କୃପା ଢଳେ ମୋତେ   ରଖ କଳ୍ପତରୁ
ଘଟଶୁଦ୍ଧି କରୁ ବୁଦ୍ଧି । ୧୩ ।
ଆସ ଆସ ମୋର   ପରାଣ ଈଶ୍ୱର
ଆସ ଗୁରୁ ମହାରାଜ,
ଆସ ବସ ଶୁଣ   ମରମ ବଚନ
ନରଟେ ହୃଦୟ ରାଜ । ୧୪ ।
କଠିନ ପରାଣ   ବିଗଳିତ ହେବ
ବିକଶିବ ହୃଦ ପଦ୍ମ,
ତବ ଦରଶନ   ନିତି ଲଭୁଥିବ
ସାର୍ଥକ କରିବ ଜନ୍ମ । ୧୫ ।
ଚରଣ ଯୁଗଳ   ସଦା ସେବୁଥିବ
ମଧୁର ଅମୃତ ଗିର,
ନିତି ଶୁଣୁଥିବ   ନିତି ଲୀଳାଦେଖି
ନେଉଥିବ ଦନ ମୋର । ୧୬ ।
ନ ଲୋଡ଼େ ମୁକତି   ଇନ୍ଦ୍ରପଦେ ଆଶ
କରୁନାହିଁ ମୁଁ ଠାକୁର,
ତୁମ୍ଭ ପାଖେ ମୋତେ   ରଖ ହେ ଦେବତା
ତୁମ ଲଖି ମୋତେ କର । ୧୭ ।

ଦିଅନ୍ତୁ ଠାକୁର    ଭକତି ଚନ୍ଦନ
ଜ୍ଞାନର ତୁଳସୀ ହାର,
ହେବେ ଭାବଗ୍ରାହୀ    ଆହେ ଗୁଣଗ୍ରାହୀ
ପାଶୁ ଅନ୍ତର ନକର । ୧୮ ।

ସାଧୁ-ମଣ୍ଡଳ-    ମଙ୍ଗଳ-ମଣି-ମଣି
ବରିଅଛୁ ଗଣି ଗଣି,
ନଦୀୟା ମଣ୍ଡନ    ଦେଇ ପ୍ରେମ ଧନ
ନେଇ ଅଛ ମୋତେ କିଣି । ୧୯ ।

ଶ୍ରୀ ଚରଣେ ତଳେ    ପରାଣ ବିକାଛି
ସାହା କେହି ନାହିଁ ଆଜ,
କୃପା କର ନାଥ    କୃପା କର ନାଥ
ଯୁଗେ ଯୁଗେ କଥା ଥାଉ । ୨୦ ।

ଜୟ ତତ୍ତ୍ୱ ଗୁରୁ    ଜୟ ଜ୍ଞାନୀ ଗୁରୁ
ଜୟ ଜୟ ଯୋଗୀ ଗୁରୁ,
ଜୟ ଜୟ ଗୁରୁ    ପ୍ରେମ କଳ୍ପତରୁ
ଜୟଗୁରୁ ଜୟଗୁରୁ । ୨୧ ।



# ପ୍ରତୀକ୍ଷା

ରାଗ—ବଙ୍ଗଳାଶ୍ରୀ

ଚରଣ ପଡଙ୍କୁ  ରଣ ଦେଇ ଅଛୁ
  ମଦନ ସଦନେ ଥାଇ,
ବେଳ କାଳ ଜାଣି  ବେଇଗି ଆସିବ
  ଅଙ୍କୁର କରିବ ନାହିଁ । ୧ ।
ନିଶା ଅବସାନେ  ଉଷା ଆଗମନେ
  ଉଠିଲେ ନଳିନ କାନ୍ତ,
ଶ୍ରୀ କର ପରଶେ  ମୋ ହୃଦ ନଳିନ
  ହେବ ନିଶ୍ଚେ ପୁଲକିତ । ୨ ।
ଯୁଗ ଯୁଗ ଧରି  ପୂରେ ପୂରେ ପୂଜ୍ୟ
  ରହିଛିଯେ ତମ ରାଶି,
ପଲକେ ଘୁଞ୍ଚିବ  ପୁଲକେ ହସିବ
  ଶୁଦ୍ଧ ସତ୍ତ୍ୱ ଜ୍ଞାନ ଜ୍ୟୋତି । ୩ ।
ଭବ ଶିଖରରେ  ହୃଦୟ ନଳିନ
  ଧରିବ ବିରାଟ ରୂପ,
କୋଳେ ଧରି ମୋତେ  ହସି ହସାଇବ
  ଆସୁଥିବ ମଧୁବ୍ରତ । ୪ ।
ସେ ସୁଦିନେ ଚାକ  ବସିଛୁ ଠାକୁର
  ଦୟାକୁ ସମ୍ବଳ କରି,
ଆଶାରେ ଆଶାରେ  ଦିଶା କାଟୁଅଛୁ
  ଦୟାଳୁ ଆସିବ ବୋଲି । ୫ ।
ଗୁରୁ ବାଣୀ ସ୍ମରି  ଗୁରୁ ରୂପ ହେରି
  ଗୁରୁ କର୍ମେ ରହି ରତ,

ଗୁରୁ ଗୃହେ ବାସ ଗୁରୁ ନାମେ ରସ
ଗୁରୁ ପଦ ସେବାବ୍ରତ । ୭ ।
ଗୁରୁ ଧନେ ଧନୀ ଗୁରୁ ମାନେ ମାନୀ
ଗୁରୁ ଦାସ ଅନୁଦାସ,
ଗୁରୁ ପରସାଦ ଗୁରୁ ଶ୍ରୀ ଚରଣେ
ଭେଟଇ ପ୍ରସାଦୀ ଗୀତ । ୮ ।



## ପ୍ରାର୍ଥନା

ରାଗ—ଶଙ୍କରାଭରଣ

ଅଜ୍ଞାନ ଅନ୍ଧାରେ ବାଟ ଦିଶୁ ନାହିଁ
ଆସହେ ଠାକୁର ଜ୍ଞାନ ଆଲୋକ ଜଳାଇ
ନିଅ ଧରି ମୋର ହାତ
ପଙ୍ଗୁ ମୁଁ ତୋ କୃପାବଳେ ଲଙ୍ଘିବି ପର୍ବତ । ୧ ।
ରିପୁଗଣ ଅବିରତ ଭ୍ରମାନ୍ତି ମୋ ଚିତ୍ତ
ତବ ଶୁଭ ଇଚ୍ଛା ହେଉ ତହିଁରେ ପତିତ
ପୂର୍ଣ୍ଣହେଉ ତବ ଇଚ୍ଛା
ମୂକ ମୁଁ ବାଗ୍ମୀ ହେବି ଲଭି ତୋର କୃପା । ୨ ।
ରହି ବିଷୟ୍ୟା ଜଡିତ ବିଷମ ସଂସାରେ
ଅବିରତ ରତ ନାଥ ଅର୍ଥ କାମନାରେ

ମନ ତୁମେ ଭବପୁରେ
ନଜାଣି ଜୀବର ଗତି ଅନ୍ତିମ କାଳରେ । ୩ ।

ଦୀନ ଠାରୁ ଦୀନ, ହୀନ ଯନ୍ତ୍ରଣା କାତର
ତୁମେ ଦୀନବନ୍ଧୁ ଆର୍ତ୍ତତ୍ରାଣ ହେ ଠାକୁର
ରକ୍ଷା କର ରକ୍ଷା କର
କରମ ହୀନ ଜନରେ କରୁଣା ସଞ୍ଚର । ୪ ।

ତୁମ ଚରଣ ସାରସ କରନ୍ତୁ ଭରସା
ଏତେବେଳେ କରନାହିଁ ଆଉ ଲୋକ ହସା
କସ ବୋଲିବେ ସଂସାରେ
ଏମନ୍ତ ସାମନ୍ତ ସେବ ଭ୍ରମଇ ଭ୍ରମରେ । ୫ ।

ପ୍ରବୋଧ ଛଳରେ ଯେବେ ଏମନ୍ତ କହିବ,
"କର୍ମେ ଯାହା ଲେଖା ଅଛି ଅବଶ୍ୟ ଭୁଞ୍ଜିବ"
କିଏ ତୁମ୍ଭଙ୍କୁ ଭଜିବ
ତୁମ୍ଭେ କାହିଁ ନିମନ୍ତେ କୃପାସିନ୍ଧୁ ବୋଲାଇବ । ୬ ।

କରି ଚରଣେ ବା କାୟ ମନ ବାକ୍ୟେ ଅବା
ଶ୍ରବଣ ନୟନେ ଦୋଷ କରିଥାଏ କଦା
କ୍ଷମ ଅପରାଧ ମୋର
ସକଳ କରମେ ଯେହ୍ନେ ନୋହିବ ପାଶୋର । ୭ ।

ଏକାଧାରେ ମାତା ପିତା ସଖା ସହୋଦର
ତୁମେ ବିଦ୍ୟା, ତୁମେ ଧନ, ତୁମେ ମୋ ଈଶ୍ବର
ଜୟ ଭକତ ଜୀବନ
ଅବରତେ ତବ ଶ୍ରୀଚରଣେ ରହୁ ଧ୍ୟାନ । ୮ ।

ଦେହ ମନ ପ୍ରାଣ କରୁଅଛୁ ସମର୍ପଣ
ଏ ଦେହ ସାରଥି ହୁଅନ୍ତୁ ଆପଣ
ପ୍ରଭୋ ! ଚରଣେ ଶରଣ,
ଯେନାକର ଯୋଡ଼ହସ୍ତ କରୁଛୁ ପ୍ରଣାମ । ୯ ।



## ପ୍ରାର୍ଥନା

ରାଗ—ଶଙ୍କରା ଭରଣ

ନମସ୍ତେ ନାଥ ନିଗମ ଆନନ୍ଦ ଚରଣେ,
ଦାସାନୁଦାସ ଶରଣ ଆଗତ ପ୍ରଣମେ
ଜୟ ଜୟ ଗୁରୁଦେବ
ଉଦ୍ଧାର ଧରନ୍ତୁ ନାଥ ଘୋଟୁଛି ପ୍ରମାଦ । ୧ ।
ନେତ୍ରେ ମୋର ଲୀଳାକର ଦିବସ ରଜନୀ,
ଯେତେ ଅନାଇଲେ ଦିଶୁ ତବ ପଦ ବେନି,
ତୁମ୍ଭ ନାମାମୃତ ପାନେ
ଅବିରତ ଚିତ୍ତ ରତ ରହୁ ରୂପ ଧ୍ୟାନେ । ୨ ।
ମନ ଗଗନେ ଘୋଟିଛି ଘୋର ଘନ ତମ,
ଶୁଦ୍ଧ ସତ୍ତ୍ୱ ଜ୍ୟୋତି ଜାଲେ କରନ୍ତୁ ହରଣ,
ତୁଟୁ ବିଷୟ ସନ୍ତାପ,
ସଞ୍ଚାର ପ୍ରେମେ ଭକତି କର ନିଷ୍କଳୁଷ । ୩ ।

ଶୟନେ ସ୍ୱପନେ ଅବା ଚିନ୍ତନେ କଥନେ,
ତୁମ୍ଭେ ମୋର ପାଶେ ପାଶେ ଥିବ ଅନୁକ୍ଷଣେ,
ପାଶୁ ନ କରିବ ଦୂର
ରଖିବ ଚରଣେ ତବ କରି ପରିଷ୍କାର । ୪ ।
କରୁଣା ନିଧାନ ଜୟ ପତିତ ପାବନ,
ଦୂରବସ୍ଥ ଦୀନ ହୀନ ଭକତ ଜୀବନ,
ଆହେ ଦୟାଳୁ ଠାକୁର
ଦୀନେ ଦୟାବନ୍ତ ଦିଅ ସେବା ଅଧିକାର । ୫ ।



## ପ୍ରାର୍ଥନା

ରାଗ—ଭୈରବୀ

ହୃଦୟ କମଳାସନେ ବସାଇ ଅତି ଯତନେ
ପଙ୍କଜ ଚରଣେ ନମେ ଗୁରୁ ଈଶ୍ୱର,
ଜାଳି ପଞ୍ଚମନ ବର୍ତ୍ତି କରୁଛି ତୁମ ଆରତି
ପ୍ରେମ, ଭକ୍ତି, ଶ୍ରଦ୍ଧା ଭୀତି ହୀନ ଅନ୍ତର,
ଧୋଇବାକୁ ରଙ୍ଗା ଚରଣ
ନୟନେ ରଖିଛି ମୋର ଭବ ତାରଣ । ୧ ।
ଅନ୍ଧ ନୟନ ଅଞ୍ଜନ କାମାଦି ରିପୁ ଗଞ୍ଜନ
ସଂସାର ଖେଦ ଭଞ୍ଜନ ହୃଦ ରଞ୍ଜନ,
ବତାଅ ସନ୍ମୁଖେ ବାଟ ପ୍ରକାଶି ବିବେକ ଘାଟ

ନକର କୁଟ କପଟ ଆକଟ ମନ,
ମୁଁ ଯେ ପଥହରା ପଥିକ
ତୁମ ବିନା ଆନ କିଏ ଶୁଣିବ ଡାକ । ୨ ।
ଅନେକ ଜନ୍ମ ସମ୍ପ୍ରାପ୍ତ     କର୍ମ ବନ୍ଧ ବିନାଶକ
ଆତ୍ମ ଜ୍ଞାନ ପ୍ରଦାୟକ ମଙ୍ଗଳମୟ,
ସଂସାର ବୃକ୍ଷେ ଆରୋହି     ନରକେ ପଡୁଛି ମୁହିଁ
ତୁମ୍ଭ ବିନା ଆନ ନାହିଁ, ଦେବ ଅଭୟ
ବ୍ରହ୍ମ ଠାରୁ ସ୍ତମ୍ଭ ପର୍ଯ୍ୟନ୍ତ
ସ୍ଥାବର ଜଙ୍ଗମ ବ୍ୟାପି ଅଛ ଅନନ୍ତ । ୩ ।
ଛେଦନ ଭବ ବନ୍ଧନ     ମୋହ ତମସା ଭଞ୍ଜନ
ନର ରୂପୀ ନାରାୟଣ, ଜଗଦୀଶ୍ୱର,
କଣାଏ କରୁଣା ବଳେ     ପଙ୍ଗୁ ଗିରି ଲଙ୍ଘେ ହେଳେ
ମୂକ କଣ୍ଠେ ବେଦ ସ୍ଫୁରେ, କରୁଣା କର,
ସେହି କୃପା କଣାଏ ଦିଅ
ପ୍ରାଣାରାଧ୍ୟ ଗୁରୁଦେବ ପ୍ରଣତି ନିଅ । ୪ ।



## ପ୍ରାର୍ଥନା

ରାଗ—ରାମକେରୀ

ଟେଢ଼ିଳା ଗୋଚରେ ଥାଇ ଡାକିକି ଡେରିଥିବ ଶ୍ରବଣ,
ଯେମନ୍ତେ ଡେରିଥିଲ ଡାକନ୍ତେ ଗଜ, ଏଣୀ, ବ୍ରାହ୍ମଣ । ୧ ।

ଶ୍ରୀପଦେ ଗୁରୁ ଭେଟୁଛି କୋଟି କୋଟି କୋଟି ପ୍ରଣତି,
ଯେଣାକର ନାଥ ପ୍ରଣତ ଜନ କରେ ଆରତି । ୨ ।
ଗୁରୁ ଶ୍ରୀଚରଣ କଳପତରୁ ପାଦପ ତଳ,
ହେଉ ଚୀରବାସ, କରୁଣା ଗଙ୍ଗା ତୀର କୁଟୀର । ୩
ନୀରେ ଅବଗାହି ପୂଜିବି ମାଧ ପ୍ରସାଧି ଫୁଲେ,
ପରସନେ ଦାସ ପଣରେ ସେବା କରନ୍ତୁ ହେଳେ । ୪ ।
ବିନା ଦରଶନେ ଫୁଟିଛି କହ କାହିଁ ନଳୀନ,
ଭାନୁ ଅନୁଦୟେ ଢୁଳିଛି କାହିଁ କେବେ କି ଯାମ । ୫ ।
ଆନ ଦୟାବିନା ଲଭିଛି କିଏ ଗୁରୁଚରଣ,
ସେହି ଦୟାମାତ୍ର ସମ୍ବଳ ଆନ ନାହିଁ ମୋ ଧନ । ୬ ।
ବିଷୟେ ଯେ ରୂପେ ସହଜେ ମନ ହୁଅଇ ବଶ,
ସେ ରୂପେ ଚରଣ ସେବାରେ ମନ ହେଉ ନିବେଶ । ୭ ।
ଅବିରତ ସେବା କାମନା ପ୍ରାଣେ ରହୁ ଜାଗ୍ରତ,
ବିଶେଷ ବିଷୟ ଆଶରୁ ମନ ହେଉ ବିରତ । ୮ ।
ଗୁରୁପ୍ରସାଦ କୈଳପାୟୀ ଭୃଙ୍ଗ ଅଟେ ମଧୁପ
ରୁହନ୍ତୁ ଇନ୍ଦ୍ରିୟ ସକଳେ ଧ୍ୟାୟୀ ତବ ସ୍ୱରୂପ । ୯ ।





## ପ୍ରାର୍ଥନା

ରାଗ—ବଙ୍ଗଳାଶ୍ରୀ

ପତିତ ଅଧମ ବୋଲି କି ହେ ଦେବ
ଦେବ ମୋତେ ଘଉଡ଼ାଇ,
ପତିତ ପାବନ ଅଧମ ତାରଣ
ନାମ ବହ୍ନ ସବଗ୍ରାହ୍ମ । ୧ ।
ନାମ ଶୁଣି ଗୁଣି ଆଶ୍ରିଛି ଠାକୁର
ତବ ଶ୍ରୀଚରଣ ତଳି,
ଦେଇ ଦୟାମୟ ଏ ଭବ ସାଗରୁ
କର ଦେବ ମୋତେ ପାର । ୨ ।
ନାମ ଶୁଣି ଶୁଣି ଗୁଣ ଗୁଣି ଗୁଣି
ଦେଖି ଦେଖି ତବ ଲୀଳା,
ସେବା କରୁ କରୁ ଗୁରୁ ପରସାଦେ
ପୂରୁ ମୋ ସଂସାର ଖେଳା । ୩ ।



## ପ୍ରାର୍ଥନା

ଜୟଗୁରୁ ହେ ଗୋସାଇଁ
ତବ ଶ୍ରୀଚରଣ ବିନୁ ଅନ୍ୟ ଗତି ନାହିଁ ॥ ୦ ॥

ପ୍ରଥମ ଶ୍ରବଣେ ତବ ନାମ ଗୁଣ ଲୀଳା,
ସମର୍ପିଛି ସକଳ ପଦେ, ପଦ ମାତ୍ର ଭେଳା ॥ ୧ ॥
ପ୍ରଥମ ଦର୍ଶନେ ତବ ମୋହନ ମୂରତି,
ଆଖି ଲାଖି ରହିଅଛି, ଶ୍ରୀପଦ ସମ୍ପତ୍ତି ॥ ୨ ॥
ମଧୁମକ୍ଷୀ ଜମ୍ବୁଗୁରୁ ମହାମନ୍ତ୍ର ସାର,
କରିଅଛି କଳକରୁ ହେବାକୁ ଉଦ୍ଧାର ॥ ୩ ॥
ସେବା ବିନୁ ଅନ୍ୟ ଆଶା ନଯାଉ ଜୀବନେ,
ପଦ ସେବା ଛଡ଼ା ଦଣ୍ଡ ନ ଦେବଟି ଯାଚନେ ॥ ୪ ॥
ଅନୁକୂଳ କୃପା ଗୁରୁ ପରସାଦେ କରି,
ଗୁରୁ ପରସାଦେ କର ସେବା ଅଧିକାରୀ ॥ ୫ ॥



## ପ୍ରାର୍ଥନା

ରାଗ— ସେଞ୍ଜି

କାମନା କଳପତରୁ  ନିଗମ ଆନନ୍ଦ ଗୁରୁ
ଶ୍ରୀ ଚରଣେ ସ୍ଥାନ ଦାସ ପ୍ରଣମି ନଅ,
ପତିତ ଅଧମ ବୋଲି  ଚରଣେ ଶରଣ ଗଲି
ଲଗାଇ ତରଣ ତରୀ ତାରଣ ଦିଅ,
ଗୁରୁ ପଦ ସେବା କରିବ,
ଗୁରୁ ପରସାଦେ ପୂରୁ ମୋ ମନୋରଥ । ୧ ।

ନିତ୍ୟ ଲୀଳା ଦରଶନେ          ଲୀଳା ପ୍ରସଙ୍ଗ ଶ୍ରବଣେ
ନିତ୍ୟ ଲୀଳା କୀର୍ତ୍ତନରେ ବଳନ୍ତୁ ମନ,
ଦେଖି ଆଖି ଲେଟିଙ୍କର          ପବିତ୍ର ହୋଇବ ମୋର
ଶୁଣି କାନ ଗୁଣି ମନ ହୋଇବ ଧନ୍ୟ
ଭ୍ରମି ସାରସ୍ୱତ କାନନେ
ତୋଳି ଫୁଲମାଳା ଗୁନ୍ଥି ଦେବି ଯତନେ ॥ ୨ ॥
ଗୁରୁତୀର୍ଥ ପର୍ଯ୍ୟଟନେ          କାମନା ଜାଗିଛି ମନେ
ଗୁରୁ ରୂପ ଧ୍ୟାନେ ମନ ଥାଉ ମଗନ
ଶ୍ରୀପଦ ସେବାରେ ମତ୍ତ          ଶ୍ରୀଗୁରୁ ପ୍ରସଙ୍ଗେ ରତ
ଗୁରୁ ନାମ ଗାଇ ତୁଟୁ ଭବ ବନ୍ଧନ,
ଗୁରୁ ପ୍ରସାଦର ମାନସ
ପରସନେ ଦରସନ ହଅନ୍ତୁ ଈଶ ॥ ୩ ॥



## ପ୍ରାର୍ଥନା

ରାଗ—କଳହଂସ କେଦାର

କରୁଣା ସାଗର ହେ          ଗୁରୁ ଈଶ୍ୱର,
ଶ୍ରୀପଦ ଯୁଗେ ମୋର          କୋଟି ଜୁହାର । ୧ ।
ସୁହାସ ବଦନ ଗୁରୁ          ସୁଧାଂଶୁ ବନ୍ଧୁ,
ହେଳେ ଚରଣ ତଳେ          ଦିଅ ଲଗାଇ । ୨ ।

ଶରଣାଗତ ଶତ ଦୋଷରେ ଦୋଷୀ,
ସୁଦରଶନେ ନାଶ ମୋ ପାପ ରାଶି । ୩ ।
ସାଧନ ହୀନ ବୋଲି ନାହିଁ ଶୋଚନା,
ହରିବ ଯେବେ ତବ କୃପାର କଣା । ୪ ।
ପଲକେ ଫୁଟି ଫୁଲ, ଭରିବ ଫଳ,
ପ୍ରସାଦେ ଜନ୍ମ ମୋର ହେବ ସଫଳ । ୫ ।
ନିଜ ହାତେ ପୋତିଛ ଯେ ଜୀବ ବୀଜ,
ନିଜେ ଭୁଞ୍ଜନ୍ତୁ ଫଳ ବରଜ ରାଜ । ୬ ।
କାନ୍ତାରୁ କଠିନ ମୋ ହୃଦୟାସନ,
ନୁହଁଇ ତବ ଯୋଗ୍ୟ ଉପବେଶନ । ୭ ।
ତବ ଚରଣ ରେଣୁ ପରଶି ପାଇ,
ଅହଲ୍ୟା କି ସ୍ୱରୂପ ଲଭିଲା ନାହିଁ ? । ୮ ।
ଅନ୍ତର୍ଯ୍ୟାମୀ ସ୍ୱାମୀଙ୍କୁ କିବା ଅଜଣା ?
କଥା ଦେଉଛନ୍ତି ବୋଲି ଜଣାଏ ମିନା । ୯ ।
ପ୍ରସାଦ ସୁମନରେ ଗୁରୁ ପ୍ରସାଦ,
ମଣ୍ଡିବ ଗୁରୁପଦ ମନରେ ସଦା । ୧୦ ।
ପୋଷିଛି ବହୁ ଦିନୁ ହୃଦୟେ ଆଶା,
ଗୁରୁ ପ୍ରସାଦେ ପୂର୍ଣ୍ଣ ହେଉ ଭରସା । ୧୧ ।
ଶ୍ରୀଗୁରୁ ସେବା ବିନୁ ଆନ କାମନା,
ନ ଜାଗୁ ପ୍ରାଣେ, ଘେନ ଦୀନ ପ୍ରାର୍ଥନା । ୧୨ ।
ପ୍ରସାଦ ବିନୁ ଧନ ନାହିଁ ମୋ ଆନ,
ପ୍ରସାଦ ଆଶେ ପଦେ ଗଲି ଶରଣ । ୧୩ ।



# ପ୍ରାର୍ଥନା

ରାଗ—କଳସା

ମଗ୍ନ ମଗ୍ନ ସୁଖ ସାଧ୍ୟ ଶ୍ରୀଗୁରୁ ଚରଣ,
ମୁଁ ଦୀନ ଭକତି ହୀନ କରେ ସୁମରଣ ।୧।
ବିଷୟ ବାସନା ବାଣେ ହୋଇ ଜରଜରିତ,
ଶ୍ରୀ ଚରଣୁ ଅଭାଗାକୁ ହୋଇଛୁ ବର୍ଜିତ ।୨।
ତ୍ରିତାପ ପାଦୁକା ନାଥ ମୋ ଦୁର୍ଗନ୍ଧ ଶିରେ,
ଆଗରେ ଝୁଲିଛି ଦେଖି ପାରି ନାହିଁ ବାରେ ।୩।
ମୋହ ପରମାଦୁ ଟେକେ ନଜାଗୁ ସଂଶୟ,
ମାଗିବା ଆଗରୁ କିନ୍ତୁ ଦେଇଛ ଅଭୟ ।୪।
ନାହିଁ ଶକ୍ତି ନିରୋଧିବ କାମିନୀ କାଞ୍ଚନ,
ତେଣୁ ନେଉଅଛି ନାଥ କାତରେ ଶରଣ ।୫।
ଏକାଧାରେ ପିତା ମାତା ସଖା ସହୋଦର,
ତୁମଠାରୁ ବଳ କେହି ନୋହୁ ଆପଣାର ।୬।
ବ୍ୟାପିଛ ଠାକୁର ତୁମେ ବିଶ୍ୱ ଚରାଚର,
ଭକ୍ତିହୀନ ବୁଦ୍ଧିନାହିଁ ମହିମା ତୁମ୍ଭର ।୭।
ଦେଖି ପାରି ନାହିଁ ତବ ମୋହନ ମୂରତି,
ଅଜ୍ଞାନ ଅନ୍ଧାର ଯେଣୁ ଆବୋରିଛି ଆଖି ।୮।
ଭବରୋଗ ବିକାରରେ ଧାମରେ ଅରୁଚି,
ବଞ୍ଚିବାର ଅନ୍ୟରାହା ଦେଖୁନାହିଁ କିଛି ।୯।
ଏବେକେ ପ୍ରାର୍ଥନା ପ୍ରଭୁ ନାମେ ବଢୁ ପ୍ରୀତି,
ଦିନୁ ଦିନୁ ବଢୁ ତବ ଶ୍ରୀ ଚରଣେ ଭକ୍ତି ।୧୦।

ଆସ ଅବତର ଆସ    ଅନ୍ତରୁ ପ୍ରସର,
ସାଗରେ ସଙ୍ଗମେ ନଦୀ    ଲୀନ ହେବା ପର । ୧୧ ।
ନଳୀନକାନ୍ତ ଦର୍ଶନେ    ମୋ ହୃଦ ନଳିନ,
ହେବ ଅଷ୍ଟେ ବିକଶିତ    ହେବ ପୂର୍ଣ୍ଣ କାମ । ୧୨ ।
ନିରାକାର ଗୁରୁବ୍ରହ୍ମ    ସାକାରେ ନିଗମ,
ଚରଣେ କମଳେ ନାଥ    ଘେନନ୍ତୁ ପ୍ରଣାମ । ୧୩ ।



## ଜଣାଣ

ମୁଣ୍ଡ ପିଟି କାନ୍ଦଇ ଉତ୍ତରବାଳୀ = ବୃତ୍ତେ

ଆର୍ତ୍ତେ ଡାକଇ ଗଜ ଆରତ ତ୍ରାଣ
ଯାହାଙ୍କ ହସ୍ତେ ପ୍ରଭୁ ଶ୍ରୀ ସୁଦର୍ଶନ, ହେ ସୌମ୍ୟ ଦର୍ଶନ
ପେଷି କରନ୍ତୁ ଚକ୍ର, ନକ୍ର ବାରଣ ହେ ସୌମ୍ୟ ଦର୍ଶନ । ୧ ।
ପ୍ରବଳ ରଜ ତମ ବଳେ ବିଜିତ
ଇନ୍ଦ୍ରିୟ ସେବାରତେ ହେଲି ପତିତ ହେ ପତିତ ପତି
ନାମ ଶୁଣି ଆସିଛି ଲଭିବ ଗତି ହେ । ୨ ।
ନାଥ ବିଷୟବାରି କରନ୍ତେ ପାନ,
କାଳ କୁମ୍ଭୀର ମୋର ଧରେ ଚରଣ ହେ ଆରତ ତ୍ରାଣ
ଆରତେ ଡାକୁଅଛି ମନ ବାରଣ ହେ । ୩ ।
ମାନବ ହୋଇ ସଦଗୁଣ ବିହୀନ
ତେଣୁଟି ପଶୁ ମଧ୍ୟେ ଗଜରେ ଗଣ୍ୟ ହେ କର କାରଣ
କଷ୍ଟ ଅଘ ସହାର କର ବାରଣ ହେ ଖେଦ ବାରଣ । ୪ ।

ଗୁରୁ ପ୍ରସାଦ ଗଜ ଘଟେ ଉତ୍ତମ,
ଆରତେ ଚହୁଅଛୁ ଆରତ ତ୍ରାଣ ହେ ଦୟା ବାରଣ
ପ୍ରେଷ ସୁଦରଶନ ସୁଶ୍ରୀଦର୍ଶନ ହେ । ୪ ।



## ଏଣୀ ଜଣାଣ

ଏଣୀ ଆରତହର ଆରତ ତ୍ରାଣ,
ଏଣୀ ମୁଁ ମୋ ବିପତ୍ତି ହର କାରଣ ହେ ଆରତ ତ୍ରାଣ
ଚରଣପଦେ ବିପଦ କରନ୍ତୁ ତ୍ରାଣ ହେ । ୧ ।
ଅନେ ବାସନା ବ୍ୟାଧ ବସିଛନ୍ତି ଜଗି,
ଚଷ୍ଟାରେ ମାୟାଜାଲ ଗଲେ ପଡ଼ିବ ହେ ଆରତ ତ୍ରାଣ
ଗର୍ଭେ ଧରିଛି ସଂସାରର ସନ୍ତାନ ହେ । ୨ ।
ବାମେ ଜଗିଛି ମୋତେ ଲୋଭୀ କୁକୁର
ଦକ୍ଷିଣେ ଜଳେ କାମନାର ଅନଳ ହେ ଆରତ ତ୍ରାଣ
ଗର୍ଭସ୍ଥରେ ଗମନେ ମୁହିଁ ଅକ୍ଷମ ହେ । ୩ ।
ଗୁରୁ ବିପତ୍ତି ଗୁରୁ କର ବାରଣ
ଆରତେ ଶ୍ରୀ ଚରଣେ ଗଲି ଶରଣ ହେ ଆରତ ତ୍ରାଣ
ଏଣୀ ଗୁରୁ ପ୍ରସାଦେ କର କାରଣ ହେ । ୪ ।



# କଣାଣ

ରାଗ—କଳସା

ଭବ ସୂରତ ସଭନେ	ଜଡ଼ିଚ୍ଛ ଭରଷା
ଏତେବେଳେ ଦେଖନାହିଁ	ଆଜ ମୋର ଦଶା ॥
ପତିତ ପାବନ ଆଜ	ଅଧମ ତାରଣ,
ନାମଶୁଣି ଯାଉଅଛୁ	ଚରଣେ ଶରଣ ॥
ଶରଣ ରକ୍ଷଣ ଯେଣୁ	ଅକରମ ଦାସ,
ମୁଁ ଏକା ଅକର୍ମା ବୋଲି	ଯାଉଛନ୍ତ ଜାଣି ॥
ପ୍ରାରବ୍ଧ ପ୍ରାରବ୍ଧ ଖାଲି	ପ୍ରାରବ୍ଧର ଦୋହି,
ଦେଇ ମୋ ପ୍ରାର୍ଥନା ସଦା	ଦେଉଛ ଏଡ଼ାଇ ॥
କର୍ମଫଳ କର୍ମଫଳ	କର୍ମଫଳ ଦାୟୂ,
ତୁମକୁ ଆଶ୍ରୟ କରି	ତେବେ ନାହିଁ ଯାଏ ॥
ଅଚେତ ରହିବ ଯେବେ	ଚୈତନ୍ୟ ଠାକୁର,
ଅଚୈତନ୍ୟ ନୁହଁଇକ	ଏମାୟା ଶରୀର ॥
ଜାଗ ଜାଗ ଜଗ ଜଗ	ସମ୍ଭାଳ ସମ୍ଭାଳ,
ତୁମେ ଘରେ ତୁମେ ବସ	ସବୁମୋ ଜଞ୍ଜାଳ ॥
ଅନ୍ତପୁରେ ସହସ୍ରାରେ	ରଜତ ପର୍ଯ୍ୟଙ୍କେ,
ରସି ବାମାରେ ବସାଇ,	ବସା ବାମ ଅଙ୍କେ ॥
ନଳିମା, ନକଣା କାନ୍ତ	ଶ୍ରୀକର ପରଶେ,
ବିଷାଦ କାଳିମା କଳୀ	ଫୁଟିବ ଅବଶ୍ୟେ ॥
ଭବ ଶିଶିର ବିନ୍ଦୁରେ	ସିନ୍ଧୁ ପ୍ରତିବିମ୍ବ,
ହୃଦ ପଦ୍ମେ ଧରି କେତେ	ହୋଇବ ଆନନ୍ଦ ॥

ଦିନାନ୍ତେ ସ୍ୱହସ୍ତେ ଢୋକି    ବୈଷ୍ଣବ ଚରଣେ,
ପଞ୍ଚାର ପ୍ରଣ୍ଡ ଆଶା    ଲଭିବ ଜୀବନେ ॥
ବର ବରେ ବର ଅଛୁ    ନକର ବାରଣ,
ଅନାଘ୍ରାତା କଳିକା ମୁଁ    କରନ୍ତୁ ଗ୍ରହଣ ॥
ପ୍ରଥମ ଶ୍ରବଣେ ତୁମ    ନାମ ଗୁଣ ଗାଥା,
ସମର୍ପିଛି ସକଳ, ପଦେ    ଲୁଚିଅଛି ମଥା ॥
ନଦେଲେ ନଦିଅ ମୋତେ    ହୃଦପୁରେ ସ୍ଥାନ,
ଚରଣ ସେବିକା କର    ରଖ ଝଣୀ ଜନ ॥
ନିତ୍ୟଲୋକେ ନିତ୍ୟକାଳେ    କରିବି ରମଣ,
ଗୁରୁ ପରସାଦ ଗଳ    ଚରଣେ ଶରଣ ॥



## ଜଣାଣ

ରାଗ—ଶଙ୍କରା ଭରଣ

କାହିଁ ଯିବି  କି କରିବି  ବୁଦ୍ଧି ନ ଦିଶଇ
ଅସୁଚ୍ଛ ଭବ ସାଗରେ ଥଳକୂଳ ନାହିଁ,
ଭବ ସାଗର କାଣ୍ଡାରୀ
ଜଳଧର ଧରନ୍ତୁ  ନାଥ ଦେଇ  ପଦତରୀ ।୧।
ମଦ ମତ୍ତ ଦୁରାଚାର    ଲୋଭୀ ଅଭିମାନୀ
ମିଥ୍ୟାରତ ଗର୍ବିତ    ପରନିନ୍ଦକ କାମୀ

ତେଣୁ କୁଟିଳ ସ୍ୱଭାବ
କ୍ରୋଧ, ହିଂସ୍ର ସନ୍ତାପରେ ନାହିଁ ଜାହାଭାବ । ୨ ।
ସକଳ ମନ୍ଦ ଗୁଣର   ମୁହିଁ ଅବତାର
ତଥାପି ପ୍ରଭୁଙ୍କଠାରେ   ଭରସା ମୋହର
ଯେଣୁ ପତିତ ତାରଣ
ଗଜ, ଅଜାମିଳ, ଏଣୀ ବିପତ୍ତି ବାରଣ । ୩ ।
ନାମ ପତିତ ପାବନ   ତ୍ରିଭୁବନେ ଖ୍ୟାତ
ପତିତ ମୁକୁଟ ମଣି   ମୁଁ ପତିତେ ଜ୍ୟେଷ୍ଠ
ଯେ ଯୋଗ୍ୟ ଯୋଗ୍ୟର ମିଳନ
ହୋଇ ଯାଇଅଛି, ଏଥୁଁ କର ପରିତ୍ରାଣ । ୪ ।



## ପ୍ରଣତି

କଲି କରମ ମୋର ହେଲ ବଇରୀ,
ଅଣ ଆୟୁତେ କର୍ମ ଫାଶେ ପଡ଼ିଲି । ୧ ।
ପ୍ରବଳ ସ୍ରୋତ ମୁଖେ ଶୁଷ୍କ ପତର,
ସମ ଯାଉଛି ଭାସି କର ଉଦ୍ଧାର । ୨ ।
କୁକର୍ମ କୁମ୍ଭୀର ମୋ ଧରିଛି ପାଦ,
ସୁଦରଶନେ ଦୂର କର ପ୍ରମାଦ । ୩ ।
ଯେସନେ ଚାତକର ଘନ ଭରସା,
ତେସନେ ପ୍ରସାଦକ ପ୍ରସାଦେ ଆଶା । ୪ ।

କୃପା ଝରଣା ବିନୁ ଜୀବନ ମୀନ,
ଶୁଖି ଯାଉଛୁ ଦେଖ କଞ୍ଜ ନୟନ । ୫ ।
ତାତରେ ଡ଼ାକୁଅଛୁ କର କରୁଣା
ଲଭୁ ଜୀବନ ମୀନ କୃପା ଝରଣା । ୬ ।
ଶ୍ରୀଗୁରୁ ଶ୍ରୀଚରଣେ ଏହି ମିନତି—
ଦାସ ଗୁରୁପ୍ରସାଦ, ଦେବ ପ୍ରଣତି । ୭ ।



## ମତ ଓ ପଥ

ଶ୍ରୀଗୁରୁ ବଚନ ଶୁଣ
ଉପଦେଶ ମାର୍ଗେ କର ଗମନ, ବାକ୍ୟମନରେ
ଯେବେ ଲଭିବୁ ଗୁରୁ ଚରଣ । ୧ ।
ଶଙ୍କର ମତ ଉଦାର
ବ୍ରହ୍ମମୟ ଅଟେ ଏହି ସଂସାର, ନିଗମ ସାର
ମାୟା ସମ୍ପର୍କ ମାତ୍ର ଅସାର । ୨ ।
ଶଙ୍କର ପଥ ସଙ୍କୀର୍ଣ୍ଣ
ନାହିଁ ଅଧିକାର ବ୍ରାହ୍ମଣ ଭିନ୍ନ, ଏପଥ ତେଜ
ଗଉରାଙ୍ଗ ପଥ ଦେଖ
ଭକତ ପଥ ଉଦାର
ଭଜିଲେ ହୋଇବୁ ଭବୁ ଉଦ୍ଧାର, କର ଭାବନା
ନାମ ସେବାଟି ଏକା ସାଧନା । ୪ ।

ଚଣ୍ଡାଳଠାରୁ ବ୍ରାହ୍ମଣ
ଭକତ ପଥେ କରନ୍ତି ଗମନ, ଅତି ପ୍ରଶସ୍ତ
ଅପାମରେ ଆଚରିତ । ୫ ।
ସଙ୍କୀର୍ତ୍ତ ଗୌରାଙ୍ଗ ମତ
ରାଧାକୃଷ୍ଣ ବେନି ଚରଣେ ଝଟ, ତେଜ ଏ ମତ
ଯେଣୁ ଏକ ବ୍ରହ୍ମ ବହୁ ରୂପ । ୬ ।
ଯେତେ ମତ ତେତେ ପଥ
ଜ୍ଞାନ ଭକ୍ତି ଦୁହେଁ ପର ପୂରକ, କାଳ ଭରଣୀ
କର୍ମ ଯୋଗେ କର ଏକ । ୭ ।
ଠାକୁର ଜଗମା ନନ୍ଦ
ଭୁଟାଇଲେ ଜ୍ଞାନ ଭକ୍ତି ବିବାଦ, ସ୍ୱାମୀ ମାଂସଳ
ଗୁରୁ ପ୍ରସାଦ କାସାନୁ ଦାସ । ୮ ।



## ଗୁରୁ ଭୋଳା

ଦୁର୍ଗମ ପାର୍ବତ୍ୟ ପଥେ ଗୁରୁ ଶିଷ୍ୟ ଦୁଇ,
ଆଗ ପଛେ ଚାଲନ୍ତି କାୟା ଛାୟା ହୋଇ । ୧ ।
ଗୁରୁ ଜଗତ ବିଖ୍ୟାତ ଶ୍ରୀସଚ୍ଚିଦା ନନ୍ଦ
ଶିଷ୍ୟ ଯୋଗ୍ୟେ ଯୋଗ୍ୟତମ ଶ୍ରୀନିଗମାନନ୍ଦ । ୨ ।
ପ୍ରକାଣ୍ଡ ଚିମୁଟା କରେ କରେ ଝମ ଝମ,
ତାଳେ ତାଳେ ଗୁରୁ କରୁ ଅଛନ୍ତି ଗମନ । ୩ ।

ପଛରେ ସତ୍ ଶିଷ୍ୟ ମାଥେ ବନ୍ଧା ପୋଥି ବିଡ଼ା,
ଲେଠା କମ୍ବଳାଦି ବୋଝେ ମୃଦୁ ତନୁ ପୀଡ଼ା । ୪ ।
ନାହିଁ ତାର ଅନୁଭୂତି ଅଥଳ ଆନନ୍ଦେ,
ନମସ୍କ୍ରିତ ଶିଷ୍ୟ ଧାବେ ମନେ ଗଦଗଦେ । ୫ ।
( ଠାକୁର ) ସାମାନ୍ୟ ପୋଥିର ବୋଝ ଥୋଇ ମୋର ମାଥେ,
ଜନ୍ମ ଜନ୍ମାନ୍ତର ଭାର ନେଇଛ ନିଶ୍ଚିନ୍ତେ । ୬ ।
ତୁମେ ମହାଜନ ମୁହିଁ ଦରିଦ୍ର ଖାତକ,
ତୁମେ ସିନା ଦାତା ମୁହିଁ ଗ୍ରହିତା ଯାଚକ । ୭ ।
ଏହି ଭାବେ ଭୋଳା ଶିଷ୍ୟ ସଦ୍‌ଗୁରୁ ବିଶ୍ୱାସୀ,
ସନାତନ ଧର୍ମାକାଶେ ରବି-ଋଷି-ଶଶୀ । ୮ ।
ଜନ୍ମ ଜନ୍ମାନ୍ତର ବୋଝ ଅଙ୍ଗୁଳ୍ୟଗ୍ରେ ନେଇ,
ମହିମା ପ୍ରକାଶୁ ଅଛ ମହିମା ଗୋସାଇଁ । ୯ ।
ବହ୍ରାହ୍ବଗ ଗାଭୀ ସମ ଶିଷ୍ୟ ପଥେ ଚାହିଁ,
ବସିଅଛ ଗୁରୁଦେବ ମୁକ୍ତି ଦେବା ପାଇଁ । ୧୦ ।
ବ୍ରହ୍ମତ୍ତ୍ୱ ବଦଳ ନେଉଅଛ କର୍ମଫଳ,
ଶ୍ରବଣ ମଙ୍ଗଳ ଜୟ କୀର୍ତ୍ତନ ମଙ୍ଗଳ । ୧୧ ।
ସ୍ମରଣ ମଙ୍ଗଳ ଜୟ ଦର୍ଶନ ମଙ୍ଗଳ,
ମଙ୍ଗଳ ମଙ୍ଗଳ ଗୁରୁ ସର୍ବ ସୁମଙ୍ଗଳ । ୧୨ ।
ପରସାଦେ ପରସାଦ ଦେଉଛ ଠାକୁର,
ଗୁରୁ ପ୍ରସାଦର ଯେନ ଅଶେଷ ଜୁହାର । ୧୩ ।



# ଅଭିଳାଷ

ରାଗ—ବଙ୍ଗଳାଶ୍ରୀ

ତୁମର କମଳ ଚରଣ ମଧୁରେ
ମନ ମଧୁପ ମୋ ରସୁଥାଉ,
କାନ ଶୁଣୁଥାଉ ତୁମ ନାମ ଗୁଣ
ଆଖି ତବ ରୂପ ଦେଖୁଥାଉ । ୧ ।
ଜିହ୍ୱା ପାନ କରୁ ତୁମ ନାମ ରସ
ଚର୍ମ ଲଭୁଥାଉ ସ୍ପର୍ଶ ସୁଖ,
ନାସିକା ଆଘ୍ରାଣ କରୁଥାଉ ତୁମ
ପଦ କୁସୁମ ସୁବାସ ବାସ । ୨ ।
କର କରୁଥାଉ ତୁମ ତନୁ ସେବା
ଚରଣ ତୁମର ପାଶେ ନେଉ,
ତବ ନାମ ଜପି ତବ ଗୁଣ ଗାଇ
ତୁମ ଧ୍ୟାନେ ଚିତ୍ତ ଲୟ ହେଉ । ୩ ।
କାମ ବଢୁ ତୁମ- ଠାରେ କ୍ରୋଧ ମୋର
ହେଉ ତୁମ ନିନ୍ଦାକାରୀ ଜନେ,
ଧନୁ ଧନୁ ମୋର ଲୋଭ ବଢୁଥାଉ
ତୁମ ସଙ୍ଗ ସୁଖ ବାଂଛା ମନେ । ୪ ।
ମୋହ ହୋଇ ଥାଏ ତୁମର କରମେ
ମତ୍ତ ହୋଇ ତବ ଗୁଣଗାନେ,
ତୁମ ଦାସ ବୋଲି ବିଶ୍ୱ ଚରାଚରେ
ଶ୍ରେଷ୍ଠ ବୋଲି ମଣୁଥିବି ମନେ । ୫ ।
ଶତ୍ରୁ ଠାରେ ସଦା କ୍ଷମା ଆଚରିବି
ହୀନ ବଳ ବୋଲି ମଣି ତାରେ,

ଦୁଃଖୀ ଜନ ଠାରେ          ଦୟା ରଖିଥିବ
କରୁଣା କରିବ ତାପିତରେ ।୭।
ଜ୍ଞ ଅବା ସାଧନ          ଭଜିବ ଠାକୁର
କଳରେ ଜନମି ଅଳ୍ପାୟୁଷ,
ସ୍ଥୂଳ ବଳ ବୋଲି          ପୋଷୁଛି ଅନ୍ତରେ
ଏହୁ ସେବା ପାଇଁ ଅଭିଳାଷ ।୭।



## ଅଭିଳାଷ

( ବୃତ୍ତି—ଏହୁ କଥାରେ ମୋ ମନ )

ଏହୁ କଥାରେ ମୋ ମନ ହେ ଠାକୁର,
ଏହୁ କଥାରେ ମୋ ମନ ॥
ନିତ୍ୟ ଉଠୁଥିବ ସୁମନ ସୁମନେ ପ୍ରସାଦ ସୁମନମାଳା,
ଶ୍ରୀଗୁରୁ ଶ୍ରୀପଦ ତଳରେ ଜହନ୍ନ ହୋଇଥିବ ସବୁବେଳା ॥
ନିତ୍ୟ ଶୁଣୁଥିବ ଗୁରୁଜୟଗୀତି ଏମୋର ଶ୍ରବଣ ଭରି,
ନିତ୍ୟ ଦେଖୁଥିବ ଚରଣନିତ୍ୟଲୀଳା ଭକତ ଗୋଷ୍ଠୀରେ ବସି ॥
ନିତ୍ୟ ସେବୁଥିବ ନିତ୍ୟାନନ୍ଦ ପଦ ହୋଇ ନିତ୍ୟାନନ୍ଦ ଦାସ,
ନିତ୍ୟ ସମ୍ପଦରେ ନିତ୍ୟ ଆନନ୍ଦରେ ନିତ୍ୟ ଲୋକେ କରିବାସ ॥
ନିତ୍ୟ ଭ୍ରମୁଥିବ ବ୍ରଜ ବୃନ୍ଦାବନେ ଅନୁସରି ଶ୍ୟାମ ସ୍ୱନ,
କେବେ ଭେଟୁଥିବ ଯମୁନା ପୁଳିନେ ଗୁରୁ ତ୍ରିଭଙ୍ଗିମ ଠାମ ॥

ନବ କଳେବର ଶୁଭଅବସରେ ସ୍ତବଗ୍ରାହ୍ୟ ନିବେଦନ,
ସତ୍ସାତେ ଦାଅ ଗୁରୁ ପରସାଦ ତବ ଇଚ୍ଛା ହେଉପୂର୍ଣ୍ଣ ॥



## ଅଭିଳାଷ

ରାଗ—ବଙ୍ଗଳାଶ୍ରୀ

ରୁଦ୍ଧ ଦୁଆର ଖୋଲହେ ଠାକୁର ରୁଦ୍ଧ ଦୁଆର ଖୋଲ,
ବଡ଼ ଆଶାକରି ଯେଜନ ମୁଁ ଆସିଛି ଜୀବନର ଦୁଃଖଭାର । ୧ ।
ପତିତ ପତିତ ପତିତପାବନ ପତିତ ତାରଣ ପାଇଁ,
ଗୁରୁ ନାରାୟଣ ନିର୍ବିକଳ୍ପ ଦେଶୁ ଆସିଅଛ ପରା ଧାଇଁ ।। ୨ ।
ଦୂର କରନାହିଁ ଘୃଣା କରନାହିଁ କରନାହିଁ ଅନାଦର,
ତୁମର ପରଶ ଦେଇ କର ବଶ ହେ ଚମ'ର ଚିରସୁନ୍ଦର । ୩ ।
ଆଣିଅଛି ଥାଳ ଭରିନଇବେଦ୍ୟ ଯାବତ କରମ ଫଳ,
ନିଅ ନିଅ ନାଥ ଦିଅ ଦିଅ ନାଥ ପଦ ସେବା ଅଧିକାର । ୪ ।





# ଅଭିଳାଷ

ରାଗ = ବଙ୍ଗଳାଶ୍ରୀ

ଏଖାନ ପରାଣେ ବେଦନା ଦେବାକୁ ସୁଖ ପାଅ ଯେବେ ବନ୍ଧୁ,
ଦିଅ ଯେତେ ଥାର ବେଦନା ଦେଇଛ ନ ଢାଳିବି ଅଶ୍ରୁବିନ୍ଦୁ ॥ ଘୋଷା ॥

ଦିନ ପରେ ଦିନ  ମାସ ପରେ ମାସ
ବରଷ ପରେ ବରଷ,
ବିତିଯାଏ ସିନା  ବିଅର୍ଥେ ଦେବତା
ଯେଣୁ ନ ପୂରୁଛି ଆଶ । ୧ ।

କେବେ ସେ ସୁଦିନ  ଏ ଜୀବନେ ମୋର
ଆସିବ ରହିଛି ଚାହିଁ,
ଗୁରୁ ପରସାଦ  ଲଭି ବିତରିବି
ପତିତ ଅଧମେ ଡାକି । ୨ ।

ଶୂନ୍ୟ ଅଞ୍ଜଳୀ  ପାତି ମୁଁ ମାଗୁଛି
ଭିକ୍ଷା ଦିଅ ଭିକ୍ଷା ଦିଅ,
ଛାର ଉପବାସୀ  ଭିକ୍ଷୁକ ବ୍ରାହ୍ମଣ
ବାଳକରେ ଭିକ୍ଷା ଦିଅ । ୩ ।

ଭରିଦିଅ ଥାଳି  ହେଉ ଏ ଜୀବନେ
ମାଗିବାର ଅବସାନ,
ସାରା ଜୀବନର  ଖୁଣ୍ଟିବାର ହେଉ
ପାଇବାରେ ସମାପନ । ୪ ।

ମାଗୁଛି ମାଗିବା  ଘର ସାମନ୍ତରେ
ଦୁଆରେ ବସିଛି ଚାହିଁ,

କଣ୍ଠାଗତ ପ୍ରାଣ    ଉତ୍ତର ନ ସହେ
ଯାଉନାହିଁ ଆଉ ଡ଼ାକ । ୫ ।
ଅନ୍ତର୍ଯ୍ୟାମୀ ନାମ    ବହୁଛ ଆପଣ
ତେଣୁ କରୁଛୁ ଭରସା,
ଜାଣି ମୋ ଅନ୍ତର    କହିବ ବିଚାର
ସତ କି ମିଛ ଏ ଆଶା । ୬ ।
କରୁଣା ଦୁଆର    ଫେଇ ଦରଶନ
ଦିଅ ଦିଅ ଦିଅ ଦିଅଁ
ଗୁରୁ ପରସାଦେ    ଗୁରୁ ପରସାଦେ
ଗୁରୁ ପରସାଦ ଦିଅ । ୭ ।



## ପ୍ରଶସ୍ତି

ନାହିଁ ନାହିଁତ
ଆମ ଗୁରୁ ସମ    ଆନ ସା'ମନ୍ତ
ତନ୍ତ୍ର, ଜ୍ଞାନ, ଯୋଗ, ପ୍ରେମ ସିଦ୍ଧି ସାଧି ॥ ୦ ॥
ସାର୍ବଭୌମ ଗୁରୁ ହେଲେତ,
ନିର୍ବିକଳ୍ପ ସାଧି ଗୁରୁ ଭବେ ଜାଗି
ଗୁରୁ କର୍ମେ ହେଲେ ନିଯୁକ୍ତ ॥ ୧ ॥
ସନାତନ ଧର୍ମ ପ୍ରଚାର କାରଣେ
ସାରସ୍ୱତ ମଠ ସ୍ଥାପିତ,
ଋଷି ବିଦ୍ୟାଳୟ ସ୍ଥାପନ କରିଣ
ଧର୍ମଶିକ୍ଷା ବିସ୍ତାର କଲେତ ॥ ୨ ॥

ଦୁର୍ବଳା ଅବଳା ଶିଷ୍ୟା ଶୈଳବାଳା
ରକ୍ଷା କଲେ ତାଙ୍କ ମହତ,
ନୀଳାଚଳେ ଆସି ଲୀଳା ପରକାଶି
ନୀଳାଚଳ ବାସୀ ହେଲେତ ॥ ୩ ॥
ଅବହେଳେ ସର୍ବ ସାଧନାର ସିଦ୍ଧି
କରି କରତଳେ ଆୟତ୍ତ,
ଶିଷ୍ୟ ଭକ୍ତଙ୍କର ସର୍ବଭାର ନେଇ
କରି ପାରନ୍ତି ମୁକତ ॥ ୪ ॥
ଜ୍ଞାନ ଗଙ୍ଗା ସଙ୍ଗେ ଭକତି ଯମୁନା
ସ୍ରୋତ କରି ଦେଇ ଯୁକତ,
ଶଙ୍କର ମତରେ ବିଶ୍ୱାସୀ, ଗୌରାଙ୍ଗ
ପଥରେ ଚାଲନ୍ତି ଭକତ ॥ ୫ ॥
ବର୍ଣ୍ଣାଶ୍ରମୀ ଗୁରୁ ବର୍ଣ୍ଣାଶ୍ରମ ଧର୍ମ
ପାଳନେ ଦିଅନ୍ତି ନିର୍ଦ୍ଦେଶ,
ସାର୍ବଭୌମ 'ଜୟଗୁରୁ' ମନ୍ତ୍ରଦାତା
ସମ୍ପ୍ରଦାୟ ଧର୍ମ ବର୍ଜ୍ଜିତ ॥ ୬ ॥
ପରସାଦେ ଗୁରୁ ପରସାଦ ଦେଇ
ସର୍ବଜ୍ଞର ନେଇ ଅଛତ,
ଜୀବ ମାତ୍ର ଶିବେ ପରିଣତ କରି
ରଖନ୍ତି ଆଶ୍ରିତ ମହତ ॥ ୭ ॥



# ପ୍ରଶସ୍ତି

ଘଟବାଣୀ

ଶ୍ରୀଗୁରୁ ଚରଣ ସ୍ମର ଖାଇମନ
(ତୋର) ଧନ ଯଉବନ କର ସମର୍ପଣ । ୧ ।
ନାମ କଣ୍ଠି ନାମ ଗଣ୍ଠି ଦେଇ ମାଳା
ମନ୍ତ୍ର ତୋର ଗଳା ମନ ତୋର ଖେଳା । ୨ ।
ନାମ ନାବେ ଚଢ଼ି ଯିବୁ ଭବ ସିନ୍ଧୁ
ଆପଦେ ବିପଦେ ସାହା ଗୁରୁ ବନ୍ଧୁ । ୩ ।
ଗୁରୁ କର୍ଣ୍ଣଧାର ଭବ ପାରାବାରେ
ପାର କରିବେରେ ଭୟ ତୋର କାହେ । ୪ ।
ନିରାକାର ଗୁରୁ ନିତ୍ୟ ନିରଞ୍ଜନ
ସର୍ବ ଦେବ ମୟ ସର୍ବ ଶକ୍ତିମାନ
ଯାହାଁ ଆଖି ଦେଖେ ଭିତର ବାହାର
ଯାହାଁ କାନ ଶୁଣେ ସକଳ ଖବର ॥ ୬ ॥
ଯାହାଁ ପାଦ ଧରେ ଅନନ୍ତ ଭୁବନ
ଯାହାଁ କର କରେ ଜଗତ ରଚନ ॥ ୭ ॥
ଯାହାଁ ପେଟ ବିଶ୍ୱ ଭରିଛି ଉଦରେ
ଯାହାଁ ପାଟି ସର୍ବ ପ୍ରଳୟରେ ଗିଳେ ॥ ୮ ॥
ଯାହାଁ ଜଳେ ସ୍ଥଳେ ଚରାଚର ବିଶ୍ୱ
ଇଚ୍ଛା ମାତ୍ରେ ସବୁ କରି କରେ ଧ୍ୱଂସ ॥ ୯ ॥
ସାକାରେ ଧରିଛି ନିଗମ ସ୍ୱରୂପ
ସ୍ଥଳଇ ସକଳ ରହିଛି ନିର୍ଲିପ୍ତ ॥ ୧୦ ॥

ଏମନ୍ତ ମହିମା ଗୁରୁ ବ୍ରହ୍ମଙ୍କର
ହୃଦେ ଲଗା ମନ ଲଭିବୁ ସକଳ ॥ ୧୧ ॥
ସୁଖ, ଶାନ୍ତି, ପ୍ରୀତି, ଆନନ୍ଦ, ଆଶ୍ରୟ,
ଏକାଧାରେ ମିଳେ ମିଳଇ ଅଭୟ ॥ ୧୨ ॥
ଗୁରୁପଦ ଧୂଳୀ ଅଙ୍ଗେ ହୋଇ ବୋଳ
ଗୋପୀ ଭାବେ ଡାକ ଗୋପୀନାଥ ବୋଲି ॥ ୧୩ ॥
ଡାକିଲା ପରିଏ ଡାକରେ ମାନସ
ନ ଆସି ରହିବେ କାହିଁ ତାଙ୍କ ବାସ ॥ ୧୪ ॥
ବଇକୁଣ୍ଠ ନାଥ ଭକ୍ତ ହୃଦେ ବସେ
ଭକତ ଚରଣ ରେଣୁ ଅଭିଳାଷେ ॥ ୧୫ ॥
(ତୋର) ଭକତି ଯମୁନା ପଡିଲେ ଉଛୁଳି
ଆସି ଭବଗ୍ରାହୀ ନେବେ କୋଳେ ତୋଳି ॥ ୧୬ ॥
ସେହି ଭକ୍ତି ପୁଣି ଅଛି ତାହାଠାରେ
କୃପା କରି ଯେବେ ତୋ ହୃଦେ ସଞ୍ଚାରେ, ॥ ୧୭ ॥
ଆଜ୍ କଦା ଉର ଶମନ ବାରଣ
କୃପାକରି ଯେବେ ଦେବେ ଦରଶନ ॥ ୧୮ ॥
ତା'ର କୃପାବଳେ ଘଟେ ଅଘଟନ
ମରୁ ବୁକେ ଫୁଟେ ଭକତି କୁସୁମ ॥ ୧୯ ॥
ପ୍ରେମ ମନ୍ଦାକିନୀ ବହିଲେ ତୋ ହୃଦେ
ଭକତି ସୁମନ ଫୁଟିବରେ ମୁଦେ ॥ ୨୦ ॥
ବାଳ କାଳେ ତୁ'ରେ ମାତା ଅଦର୍ଶନେ
ବ୍ୟାକୁଳ ଭାବରେ କାନ୍ଦୁ ଥିଲୁ ଯେହ୍ନେ ॥ ୨୧ ॥
ବାଳକ ପରାୟ ସକଳ ଅନ୍ତରେ
ଡାକ ଥରେ ତାଙ୍କୁ କାତର କଣ୍ଠରେ ॥ ୨୨ ॥

ଆସ ରାଜେଶ୍ୱର — ଗୁରୁ ମହାରାଜ
ଗୋପନେ ମୋ ହୃଦ — ଗୁହାରେ ବିରାଜ ॥ ୨୩ ॥
ବାହ୍ୟ ଦୃଷ୍ଟି ମୋର — ହୋଇ ଯାଉ ଲୋପ
ନିରନ୍ତର ନିରେ- — ଖିବି ତବ ରୂପ" । ୨୪ ।
ଭରିଅଛୁ ପ୍ରଭୁ — ଅଣୁ ପରମାଣୁ
ସାକ୍ଷୀରୂପେ ନିଜ- — ସିଞ୍ଚୁ ସବୁ ତନୁ । ୨୫ ।
ଶକ୍ତି ତାର କରେ — ଜଗତ ସର୍ଜନ
ପାଳି କାଳେ କରେ — ପ୍ରଳୟେ ବିଲୀନ । ୨୬ ।
ସେହି ଶକ୍ତି ପୁଣି — ଆଦ୍ୟା ସନାତନୀ
ମୂଳାଧାରେ ବସେ — କୁଳ କୁଣ୍ଡଳିନୀ । ୨୭ ।
ତାଙ୍କ କୃପାବଳେ — ପଙ୍ଗୁ ଲଙ୍ଘେ ଗିରି
ମୂକ ପୁଣି ଗାଇ- — ପାରେ ବେଦ ଗିର । ୨୮ ।
ଅଜ୍ଞାନ ଅନ୍ଧାର — କରନ୍ତି ବିନାଶ
ସେହି ଶକ୍ତି ପୁଣି — ତାଙ୍କ ଠାରେ ବଶ । ୨୯ ।
ସର୍ବ ନାରୀ ସମ — ଘଣ୍ଡ ପ୍ରିୟ ସୁତେ
ତାଙ୍କ କୃପା ପଡି — ଥାଏ ଅବିରତେ । ୩୦ ।
(ସେ) ସଦ୍‌ଗୁରୁ ଚରଣେ — ଲଗା ତୋର ମନ
ଲଗା ତୋର ଧନ — ସମସ୍ତ ଜୀବନ । ୩୧ ।
ସେ ପରମହଂସ — ସନ୍ୟାସୀ ହୃଦୟ
ଶିଷ୍ୟ ଭକ୍ତଙ୍କର — ଦୁଃଖରେ ଅଥୟ । ୩୨ ।
ପତିତ ତାରଣେ — ମହାବ୍ରତ ଧରି
ନିର୍ବିକଳ୍ପ ଦେଶୁଁ — ଆସିଛନ୍ତି ଫେରି । ୩୩ ।
ସନାତନ ଧର୍ମ — କରିବେ ପ୍ରଚାର
ଶବ ଦେହେ କରି — ଜୀବନ ସଞ୍ଚାର । ୩୪ ।

ଜୀବସେବା କାର୍ଯ୍ୟେ     • ହୋଇ ଅଗ୍ରସର
ସତ୍‌ଶିକ୍ଷା ଜଗତେ     କରିବ ବିସ୍ତାର । ୩୫ ।
ତାଙ୍କ ପ୍ରିୟ କର୍ମ     କର ଅନୁଷ୍ଠାନ
ହୋଇ ସହାୟକ     ସାଧରେ ଧରମ ॥ ୩୬ ॥
(ତା'ର) ଏ ପାପର କାମ     କଲେ ଅନୁଷ୍ଠାନ
(ତୋର) ସେ ପାପ ଦଗ୍ଧିବ     କରିବ ବନ୍ଦନ ॥ ୩୭ ॥
ଏହି ଭିକ୍ଷା କର     ତାଙ୍କ ଚରଣରେ
ତାଙ୍କ ଇଚ୍ଛା ପୂର୍ଣ୍ଣ     ହେଉ ସର୍ବକାଳେ ॥ ୩୮ ॥



## ନବଧା ଭକ୍ତି

ନିଗମ କଳ୍ପତରୁରୁ ଗଳେ ଗଳିତ ଫଳ,
ଶୁକ ମୁଖାମୃତ ସଂଯୋଗେ ହୋଇଅଛି ମଧୁର । ୧ ।
ବସିଛନ୍ତି ରାସ ରସରେ ରସି ରସିକଗଣ,
ଋଷିରାଜ ରମ୍ୟ ଚରିତ ହୁଏ ପରିବେଷଣ । ୨ ।
ଶ୍ରବଣ, କୀର୍ତ୍ତନ, ସ୍ମରଣ, ପ୍ରଭୁ ପଦ ସେବନ
ପୂଜନ, ଅର୍ଚ୍ଚନ, ବନ୍ଦନ, ଦାସ୍ୟ, ସଖ୍ୟ ସାଧନ । ୩ ।
ଆତ୍ମ ନିବେଦନ—ନବଧା ଭକ୍ତି ଅନୁଶୀଳନ,
କରୁ ହେଲେ ଲଭି ଅଛନ୍ତି ଭଗବତ ଚରଣ । ୪ ।
ପରୀକ୍ଷିତ, ଶୁକ, ପ୍ରହ୍ଲାଦ, ଲକ୍ଷ୍ମୀ, ପୃଥୁ ନୃପତି,
ଅକ୍ରୂର, ମାରୁତି, ଅର୍ଜୁନ, ବଳୀ ଦାନବ ପତି । ୫ ।
ମହାଜନ ମାର୍ଗେ ଗମନ ସଦା ବାଂଛିତପ୍ରଦ,
କର ତାଇ ଅନୁସରଣ ସେବ ଶ୍ରୀଗୁରୁ ପାଦ । ୬ ।

ଭାଗବତ ରସ ପାନରେ ରତ ଗୁରୁ ପ୍ରସାଦ,
ଗୁରୁ ପରସାଦେ ଲଭିଛୁ ଗୁରୁ ପଦ ସମ୍ପଦ । ୭ ।



## ଆଶା

(ବଡ଼ ମାୟାଙ୍କ ଜୀବ ନୁହେଁ କାହାର-ବୃତ୍ତି)

ଗୁରୁ, ବଡ଼ ଠାକୁର ବୋଲି ଶୁଣିଛି—
ଆଶା, ଟେସବ ମାଥେ ଆସି ଅଛି— । ୦ ।
ବ୍ୟାଧର ଆଚରଣ କିବା ଧ୍ରୁବ ବୟସ,
ଗଜର କିବା ବିଦ୍ୟା କୁବୁଜାର କି ରୂପ
କେଉଁ ଧନେ ସୁଦାମ ବିପ୍ର କରିଲ ବଶ
ବିଦୁର କେଉଁ ବଂଶରେ ଜାତ । ୧ ।
ଯାଦବପତି ଉଗ୍ର— ସେନର କି ପୌରୁଷ
ଭକ୍ତିପ୍ରିୟ ମାଧବ ଭକତି ଭାବେ ବଶ
ସରଳ ବିଶ୍ୱାସରେ କୃଷ୍ଣ ନାହାନ୍ତି ଦୂରେ
ଭାବକୁ ନିକଟରେ ପ୍ରାପତ— । ୨ ।
ଶୂନ୍ୟ ପସରା ମୋର ଭକତି ଭାବେ ଭର
ପତିତ ଅଧମରେ ବିଶେଷ ଦୟାକର
ଦୟାନିଧି ନାମରେ ବଡ଼ ଭରସା ମୋର
ରଖ ଗୁରୁ ପ୍ରସାଦ ମହତ । ୩ ।



# ❋ ପଥ ❋

ବଡ଼ ମାୟାଗ୍ରା ଜୀବ ନୁହେଁ କାହାର—ବୃତ୍ତେ

ଭାଇ, ଭକତ ପଥେ କର ଗମନ—
ଯେବେ, କରିବୁ ଗୁରୁ ପଦ ଦର୍ଶନ ॥ ୦ ॥
ଗୁରୁ ସେବା ଆଚର ସାଧୁସଙ୍ଗ ତୁ କର
ଭକତ ପଥେ ଥିବା କଣ୍ଟାକୁ ଦୂର କର
କୁସଙ୍ଗ ପରିହରି, ଅର୍ଥ ଅନର୍ଥ ମ'ଣ
ତେଜ କାମିନୀ ଆଉ କାଞ୍ଚନ ॥ ୧ ॥

ଘୃତ ଆହୁତି ପାଇ ହୁତାଶନ ଜଳଇ
ଭୋଗେ ବଢ଼ଇ କାମ ତ୍ୟାଗେ ମିଳନ୍ତି ଶ୍ୟାମ
ସର୍ବନାଶର ହେତୁ କ୍ରୋଧଟି ମହାଶତ୍ରୁ
ତୁନ ରହିଲେ କ୍ରୋଧ ଦମନ ॥ ୨ ॥

ପାପର ହେତୁ ଲୋଭ ଲୋଭରୁ ମୃତ୍ୟୁ ଲଭ
ଲୋଭରୁ କ୍ରୋଧ-କାମ ମୋହ ବିନାଶ ଜନ୍ମ
ଦେଖ ଭକତ ପଥେ ଲୋଭ ଓଗାଳେ ବାଟ
ମନ ସଂଯମେ ଲୋଭ ଦମନ ॥ ୩ ॥

ଯାହା ନୁହଁଇ ତୋର ତାକୁ କହୁଛୁ ମୋର
ତୋର ଘର ସଂସାର ବିଶେଷରେ ଈଶ୍ୱର
ନ ଖଟେ ପର ଧନ ଏଥି ତୋ ଅଧିକାର
ମୋହ କରଇ ମନ ସଙ୍କୀର୍ଣ୍ଣ ॥ ୪ ॥

ଜ୍ଞାନ ବୋଲ ଭାବୁଛୁ    ମନୁଷ୍ୟ ନ ଚିହ୍ନୁଛୁ
ତୋ ମନେ ତୁ ପଣ୍ଡିତ    ସକଳ ବିଦ୍ୟାଯୁକ୍ତ
କହତ କିଏ ତୁହ୍ନି    ଆସିଛୁ ଯିବୁ କାହିଁ
ଆତ୍ମ ପ୍ରଶଂସା କର ବର୍ଜନ ॥ ୫ ॥
ପର ସୁଖରେ ସୁଖ    ଗୁଣେ ଦୋଷ ନ ଦେଖ
ପର ଚରଚ୍ଚା ତେଜ    ଗୁରୁ ଗୋବିନ୍ଦେ ଭଜ
ଶ୍ରୀଗୁରୁ ଉପଦେଶ    ମାନି କାଟିଲେ କାଳ
ନିଶ୍ଚେ ଲଭିବୁ ଗୁରୁ ଚରଣ ॥ ୬ ॥



## ❋ ଜାଗୃତ ❋

ଜୟ ଗୁରୁ ମନ୍ତ୍ରଦ୍ରଷ୍ଟା
ସଦ୍‌ଗୁରୁ ନିଗମାନନ୍ଦ ଦେବତା, ପରମ ଗୁରୁ,
ସାରସ୍ୱତ ପୀଠ ଭର୍ତ୍ତା, ପରମଗୁରୁ ॥ ୧ ॥
ଆଚାର୍ଯ୍ୟ, ପରିବ୍ରାଜକ,
ସ୍ୱାମୀ, ସରସ୍ୱତୀ, ପରମହଂସ, କଲେ ସ୍ୱୀକୃତ
ଶୃଙ୍ଗେରୀ ମଠ ମୋହାନ୍ତ, କଲେ ସ୍ୱୀକୃତ ॥ ୨ ॥
ଗୁରୁ ଭାର ଶିରେ ବହି
ବୁଲୁଛନ୍ତି ଜୀବ ଉଦ୍ଧାର ପାଇଁ, ଗୁରୁ ଗୋବିନ୍ଦ
ଜୀବ ଦୁଃଖେ ଦୟା ବହି, ଗୁରୁ ଗୋବିନ୍ଦ ॥ ୩ ॥
ସତ୍‌ଶିକ୍ଷା କରି ବିସ୍ତାର,
ସମାଜୁ ଅଜ୍ଞାନ କରିବେ ଦୂର, ଗୁରୁ କରମ,
ଧର୍ମ କରିବେ ପ୍ରଚାର, ଗୁରୁ କରମ ॥ ୪ ॥

ଏହ୍ବ ଗୁରୁ କର୍ମ ପାଇଁ,
ମଠାଶ୍ରମ ସଂଘ ଦେଲେ ଗଢ଼ାଇ, ତାଙ୍କର କର୍ମ
(ହୋଇ) ସହାୟକ ସାଧ ଧର୍ମ, ତାଙ୍କର କର୍ମ ॥ ୫ ॥
"ସାଧୁଛୁ ମୁଁ ତୋହ ପାଇଁ
ପୃଥକ ସାଧନା ପାରବୁ ନାହିଁ, ମୋ କର୍ମ କର,
(ମୁହିଁ) ନେଲ ତୋର ସବ ଭର, ମୋ କର୍ମ କର ॥ ୬ ॥
ତନ ଜନ୍ମେ ଦେଲ ମୁକ୍ତ,
ଗୁରୁ ଶକ୍ତ ସଙ୍ଗେ ହୋଇଛୁ ଚୁକ୍ତ, ନାହିଁରେ ଚନ୍ତା
ମୋ କାର୍ଯ୍ୟ ଜେଉଁ ଖଟା, ନାହିଁରେ ଚନ୍ତା ॥ ୭ ॥
ପାହ୍ଣେ ବଢ଼ିଲେ ଭୁହ,
ସହସ୍ର ଯୋଜନ ଯିବ ମୁଁ ଧାଇଁ, ବସିଛୁ ମୁହିଁ,
ତୋହର ପଥକୁ ଚ୍ହିଁ, ବସିଛୁ ମୁହିଁ ॥ ୮ ॥
ଆଦର୍ଶ ଗୃହସ୍ଥ ଗୃହେ,
ବ୍ୟାସ, ବାଲ୍ମୀକ ଜନମ ନେବେ, ଜ୍ଞାନ ଗରିଷ୍ଠ
କର୍ମେ କରବେ ପ୍ରକଟ ସତ୍ୟ", ଜ୍ଞାନ ଗରିଷ୍ଠ ॥ ୧୦ ॥
ଜନମ ଭରତ ମାତା,
ସାରା ଜଗତରେ ହେବେ ବନ୍ଦତା, ଗୁରୁ ବଚନ,
ଶିଷ୍ୟ ଧରମ, କର ପାଳନ, ଗୁରୁ ବଚନ ॥ ୧୧ ॥
ଜାଗି ଉଠିବ ଭରତ,
ଦୁନଆକୁ ଦେବ ନୂଆ ଆଲୋକ, ଚେତରେ ଚେତ,
ଗୁରୁ ପରସାଦ ଗୁରୁ ଦାସ, ଚେତରେ ଚେତ, ॥୧୨ ॥



# ❋ ଦାସର ପ୍ରାର୍ଥନା ❋

ଆଷାଢ଼ ଶୁକ୍ଳବାଣୀ

ପୂର୍ଣ୍ଣ କରିବ ଦାସର ପ୍ରାର୍ଥନା
ତୁମ ସଙ୍ଗ ସୁଖ ସଦା କାମନା
ଇତି ଭିନ୍ନ ଚିତ୍ତ ନ ଲୋଡ଼େ ଆନ
ରାତି ପାହି ପଦେ ଲଭୁ ଶରଣ

ଆହେ ଗୁରୁ ସ୍ୱାମୀ,
ମନ ଜାଣି ନେବ ମନକୁ କିଣି ॥ ୧ ॥

ମନ-ବନେ ଜଳେ ବିରହାନଳ
କରୁ ନିର୍ବାପିତ ପ୍ରେମ-ସଲିଳ
ଶରୀର ଯନ୍ତ୍ରରେ ହୁଅନ୍ତୁ ଯନ୍ତ୍ରୀ
ପ୍ରେମେ ନାଚୁ ମୋର ପରାଣ ତନ୍ତ୍ରୀ

ପ୍ରେମିକ ଠାକୁର
ଦାସୀ ସାଜଅଛି ବାସର ଘର ॥ ୨ ॥

ପ୍ରତୀକ୍ଷା ରଜନୀ ଯାଉଛି ପାହି
ତୁମେ ରହିଲ କା' କୁଞ୍ଜରେ ଯାଇ
ଆଶାରେ ଆଶାରେ କାଟୁଛି କଣି
ଚାହିଁଅଛି ଚନ୍ଦ୍ର- ବଦନ ଚଣି

ଆସିବ ଠାକୁର
ରସି ରସାଇବ ଭାବନା ମୋର ॥ ୩ ॥

ପ୍ରେମେ ଏ ପାମାକୁ ନେବଟି କିଣି
ପରସାଦେ ମୋତେ କରିବ ଧନୀ
ଶ୍ୟାମ ପ୍ରେମ ହୋଇ ଅଭିମାନିନୀ
କ୍ଷଣ ମଣୁଥିବ ଦିବା ରଜନୀ
ଗୁରୁ ପରସାଦେ,
ଗୁ ରୁ ପ୍ରସାଦ ଶ୍ରୀଚରଣେ ଭଜେ ॥ ୪ ॥



## ✻ ଆହ୍ୱାନ ✻

ବଜା, ବଜା,
ବାମ ସ୍ୱନେ କାମ ବଂଶୀ ବଜାରେ,-ବ୍ରଜ ରାଜା ॥ ୦ ॥
ଗୃହେଁ ଗୃହେଁ ବସି ହେଲା ଅଧ ନିଶି,
ଦେଖ ମଥା ପରେ, ଉଠିଲେଣି ଶଶୀ,
ନିଦ ଯାଇଛନ୍ତି ସୁଖେ ଗୋପବାସୀ,
ଆଜ ଉଚ୍ଛୁର ନ କର ବଜାରେ, ବଜା ବଜା ॥ ୧ ॥
ତେଜିଲି ଏ କୂଳ ନ ପାଏ ସେ କୂଳ,
କାମନା ଅନଳ ଜଳେ ପରବଳ
ଗୋପଗୋଇ ବଳ, ତୁ ଏକା ଗୋପାଳ,
ତୋର ପାଇଁ ଗୋପପୁର ମଜାରେ, ବଜା ବଜା ॥ ୨ ॥
ହୃଦୟ ଯମୁନା ପୁଲୀନ କାନନେ,
ମନ-ନିକୁଞ୍ଜରେ ବଜେ କଣ୍ଠ ଘନେ,
ରସି ରସା ଯୋଗା ଆଶା ନିଶି-ଦିନେ,
ରାସ ରସ ରସିକଙ୍କ ରଜାରେ, ବଜା ବଜା ॥ ୩ ॥

—o—

## ❊ ମନ ଶିକ୍ଷା ❊

କି ହେବ ଶୁଆ ପୋଷିଲେ—ବୃତ୍ତେ

କି ହେବ ଗୁରୁ କରିଲେ,
ଗୁରୁ କରିଲେ କି ହେବ, ଗୁରୁ ସେବା ନ କରିଲେ
କି ହେବ ଗୁରୁ କରିଲେ ॥ ୦ ॥
ବିଧାତାର ସରଜନା ବିଶ୍ୱ ସଂସାର,
ସକଳ ଜୀବରେ ଏଥି ମାନବ ସାର,
ମାନବ ହୋଇ କି ହେବ, ସଦ୍‌ଗୁରୁ ନ ସେବିଲେ ॥ ୧ ॥
ଆହାର, ନିଦ୍ରା, ମିଥୁନ, ଭୟଟି ଭାଇ,
ବିଶ୍ଚର ଦେଖ ଏମାନ ପଶୁର ଥାଇ,
ନର-ପଶୁ ତାକୁ କହି, ଧରମ ଜ୍ଞାନ ନ ଥିଲେ ॥ ୨ ॥
ରେ ମନ ! ଧରମ-ଧନ ସଞ୍ଚୟ କର,
ଜୀବ ଯିବାବେଳେ ଯିବ ସଙ୍ଗତେ ତୋର,
ପରମ-ଧନ ଲଭିବୁ, ଧରମ ଆସ୍ଥର ବଳେ ॥ ୩ ॥
ସେବାଟି ଅଟଇ ଭାଇ ଶ୍ରେଷ୍ଠ ଧରମ,
ଗୁରୁ ପଦ ସେବାକର ବୁଝି ମରମ,
ଗୁରୁ ସେବକ ନ ବୁଡ଼େ, ଭବ-ସାଗରର ଜଳେ ॥ ୪ ॥
ମନ ଜାଣି ସେବା ଏକା ସେବାର ମନ୍ତ୍ର,
ଏଇ ସେବା-ଫଳେ ଭାଇ ହେବୁ ପବିତ୍ର,
ଗୁରୁ ପ୍ରସାଦ ଲଭିବୁ, ଗୁରୁ ସେବା ଆଚରିଲେ ॥ ୫ ॥



# ❊ ମନ ଶିକ୍ଷା ❊

ଗୁରୁ ଧନେ ମନ ବଳାରେ
ଗୁରୁ ଧନେ ମନ ନ ବଳା ॥ ୦ ॥
ଗୁରୁ ଧନ ଗୁରୁ-ଧନଙ୍କର ବାଉଳା
ଗୁରୁ ଧନ ଗୁରୁ ଧନ,
ଏଇ ଗୁରୁ ଧନ ମୂଳ ଧନ କରି
ଗୁରୁ ଜ୍ଞାନେ କର ଗୁରୁ କରମ ॥ ୧ ॥
ଗୁରୁ ପଦ ଧୂଳି ଅଙ୍ଗେ ହୋଇ ବୋଳି
ଗୁରୁ ପଦ ଜଳ କର ସେବନ,
ଗୁରୁ, ଗୁରୁ ଜନେ ଦେବତା ବ୍ରାହ୍ମଣେ
ଗୁରୁ ଜ୍ଞାନେ କର ଅବଧାରଣ ॥ ୨ ॥
ଗୁରୁ ନାମ ସାର ଗୁରୁ ନାମ କର
ଗୁରୁ ବାଣୀ ଭାଇ ପଥର ଗାର
ଗୁରୁ ତୀର୍ଥେ ବାସ କଲେରେ ବାଉଳା
ଗୁରୁ ଦରଶନ ହୋଇବ ତୋର ॥ ୩ ॥
ଗୁରୁ ଧନେ ଲୋଭ ହୁଅରେ ବାଉଳା
ଗୁରୁ ଧନେ ଲୋଭ ନୁହଁ,
'ଲୋଭଁ ପାପ, ପାପୁଁ ମୃତ୍ୟୁ' ଗୁରୁ-ବାଣୀ
ମନେ ତେଜ ରଖିଥାଅ ॥ ୪ ॥
ମଠାଶ୍ରମ ସଂଘଧନ ଗୁରୁଧନ
ହରିଲେ ନରକ ଗତି,
ସନ୍ତୋଷରେ ଗୁରୁ ଯାହାଦେବେ ତାହା
ଆନନ୍ଦେ ଭୁଞ୍ଜିବୁ ବସି ॥ ୫ ॥

ଅକସ୍ମାତେ ଯାହା ମିଳିବ ତୋହତରେ
ଗୁରୁଦେବେ ସମର୍ପିବୁ,
ଗୁରୁ ଅଗୋଚରରେ ଲୁଠାଖିଅଛିରେ
ହାତ ଉଠା! ନ କରିବୁ ॥ ୬ ॥

ଦେବତା ବ୍ରାହ୍ମଣ ଗୁରୁଧାନ ଭୋଗେ
ପାପ ଆଶା ନ କରିବୁ,
ଗୁରୁ ନାମେ ଯିଏ ନିଜେ ଭୋଗ କରେ
ଘୁଅ ଭାର ନ ମାଡ଼ିବୁ ॥ ୭ ॥

ହାତ ଟେକ ଦେଲେ ଉଡ଼ି ମରି ନେବୁ
ରଖିବୁ ଧନରେ କରି ଯତନ,
ଆପଣାକୁ ଆପେ ଛଡ଼ାଇ ଦେନିଲେ
ଲଭିବୁ ଅଶେଷ କର୍ମ କଷଣ ॥ ୮ ॥

ଗୁରୁ ପରସାଦେ ଗୁରୁ ପରସାଦ
କହେ ଗୁରୁତର କଥା,
ଗୁରୁଟି ଈଶ୍ୱର ଗୁରୁ ପରେଶ୍ୱର
ଗୁରୁ ପଦେ ଵକ ମଥା ॥ ୯ ॥



# ❋ ନିବେଦନ ❋

ରାଗ—ବଙ୍ଗଳାଶ୍ରୀ

**ଆଉ** କାହା ପାଶେ ଯିବି ?

ହେ ଗୁରୁ ଗୋବିନ୍ଦ ତୁମ ପଦ ବିନା, ଆଉ କାହା ପାଶେ ଯିବି ?

ଯାହା ଥିଲା କିଛି ସବୁତ ଦେଇଛି
ଆଉ କିବା ଅଛି ମୋର,
ତୁମର ସଂସାରେ ଖଟିବାରେ ମୋର
କିଣି ଧନ ନାହିଁ ତର ॥ ୧ ॥

ନ ମୁଛିବ ଯେବେ ମରମ ବେଦନା
ଡାକିବାରେ ଆଉ ଆଖି,
ଚୀର ଉପବାସୀ ଏ ଦାସୀର ପ୍ରତି
ନଷ୍ଟେ ହେଲା କରମାଖି ॥ ୨ ॥

ହତାଶ ବତାସ ବହେ ଅଣଗୁଣ
ଏ ମନ ଗଗନେ ମୋର,
କାନ ଶୁଣିଅଛି ଆଖି ନ ଦେଖୁଛି
ଲାଗିଛି ବିବାଦ ଘୋର ॥ ୩ ॥

ଶ୍ରବଣ ନୟନ ବିବାଦ ମେଣ୍ଟାଅ
ବସି ହୃଦ ସିଂହାସନେ,
ଚାତକ ପରାଏ ଗୁରୁ ପରସାଦ
ଚାହିଁଅଛି ନବଘନେ ॥ ୪ ॥

ତୁମରି ପଦରେ ମନ ଅରପିଛୁ
ଧର୍ମ କେମନ୍ତେ ଲଙ୍ଘିବ,
କରିନେବ ଯେବେ ନିଜ ମନଲକ୍ଷ୍ମୀ
ଶ୍ରୀଚରଣ ସେବୁଥିବ ॥ ୫ ।
ନାହିଁ ଆନ ମୋର ନେଇ ସବୁ ଶ୍ୱାସ
ପୋଷିବ ଜୀବନ ସାର,
କଏ ବୁଝାଇବ ନିଜେ ନ ବୁଝିଲେ
କାହାର ବା ଅଛି ଗୁର ॥ ୬ ॥
ଦେଖୁଅଛୁ କହୁ ଆଜ ଯା ରହୁଛି
ପଢ଼ିବ ଅନ୍ତରଯାମୀ,
ଏ ମନର ପ୍ରତି କୋଣେ ଅନୁକୋଣେ
କାହାର ଭାବନା ସ୍ୱାମୀ, ॥ ୭ ॥
ମୋ ଦୁଃଖ ଦେଖିଲେ ପାଷାଣ ତରଳେ
ପାଷାଣୁ ବଳି କଠୋର,
କପର ହୋଇଛୁ କୁସୁମ କୋମଳ
ନବନୀତ ତୁଲ ଚୋର ॥ ୮ ॥
ଏତେ ହତାଦର ଏତେ ଲାଞ୍ଛନମାନ
ସହି ଏତେ ଅତ୍ୟାଚାର,
ରହୁଛି ରହିବ ପାଦତଳେ ବସି
ଏଥିକୁ କର ବିଚାର । ॥ ୯ ॥



# ❋ ନିବେଦନ ❋

ପଛେ ହୋଇ ଛୁଞ୍ଚା କରାଇ ନିଅନ୍ତୁ
କରିବାର ଅଛି ଯାହା,
ସଂସାରେ ସକଳ କରମ ମନ୍ଦିରେ
ତୁମେ ରହିଥିବ ସାକ୍ଷୀ ॥ ୧ ॥
କରମ ଶେଷରେ ଯିହାଁଲା ବେଳକୁ
ଆଗରେ ହୋଇବ ଠିଆ,
ଧର ମୋର ହାତ ଚଳାଇବ ପଥ
ପୁଲକ ଉଠିବ ହିଆ ॥ ୨ ॥
ଏପାରରେ ତୁମ ଘର ହେ ଠାକୁର
ସେପାରରେ ତୁମ ଘର,
ତୁମ ଘରକାମ କରାଇ ନିଅନ୍ତୁ
ମୁହିଁ ସେବକ ମାତର ॥ ୩ ॥
ଅଭିମାନ କେବେ ନ ଆସୁ ଜୀବନେ
ନିମିତ୍ତ ମାତର ହୋଇ,
ତୁମରି ଆଦେଶେ ତୁମରି କରମ
କରିଯିବି ଯନ୍ତ୍ର ହୋଇ ॥ ୪ ॥
ବାଞ୍ଛା କଳ୍ପତରୁ ତଳେ ପରସାଦ
ଲୋଲୁପ ବସିଛି ଠାକ,
ସୁଆଦ ବାରିବ ଶୁଣାକଥା ସତ
ମିଛର ପରଖ ବାକି ॥ ୫ ॥



## ❋ କୀର୍ତ୍ତନ ❋

ଦେଖାଅ ଆଲୋକ ସେ ଆଲୋକପାତେ
ଦେଖିନିଏ ଥରେ ପଥ,
ତୁମ ଆଗମନେ ସେ ପଥ ହୋଇଛି
କୁସୁମିତ ସୁବାସିତ ॥ ୧ ॥

ଧର୍ମ ପଥ ସୁବନ୍ଦିତ, ଶଙ୍କର ଗୌରାଙ୍ଗ ମତ ।
ଧର୍ମ ପଥ ସୁପ୍ରଶସ୍ତ, ଜ୍ଞାନ ଭକ୍ତି ସମ୍ମିଳିତ ।
ଧର୍ମ ପଥ ସୁଖପଥ, ନିଗମ ଆନନ୍ଦ ମତ ।
ଜ୍ଞାନ ଲଭେ ଭକ୍ତି ପଥ, କଳିଯୁଗେ ଆଚରିତ ।

ନିଗମ ମତରେ ଆନନ୍ଦ ପଥରେ
କରେଦିଅ ଅଭିଷିକ୍ତ,
ଗୁରୁ ଚରଣରେ ଗୁରୁ ପରସାଦ
ହୋଇଯାଉ ଅରପିତ ॥ ୨ ॥

ବ୍ରହ୍ମ ସତ୍ୟ ଜଗତ୍ ମିଥ୍ୟା, ଆଚାର୍ଯ୍ୟ ଶଙ୍କର ଶିକ୍ଷା ।
ଜୀବ ବ୍ରହ୍ମ ନୁହେଁ ପର, "ଅହଂ ବ୍ରହ୍ମ" ଶାସ୍ତ୍ରସାର ।
ଆତ୍ମ ଜ୍ଞାନ ଦେବା ପାଇଁ, ଗୁରୁଙ୍କର ଶିରେ ବନ୍ଧ ।
ସାଧୁ ସଙ୍ଗ ନିତ୍ୟ କର, ଭକ୍ତି ମାରଗ ଆଚର ।
ଭାଗବତ, କୃଷ୍ଣ ସେବା, ବ୍ରଜେ ନିବାସ କରିବା ।
ନାମ ଜପ ନାମ କର, ପଞ୍ଚ ସାଧନ ଆଚର ।
କଳି ପାବନାବତାର, ଗୌରାଙ୍ଗଙ୍କ ପଥ ସାର ॥
ଏ ପଥେ କଲେ ଗମନ, ଲଭି ହେବ ଆତ୍ମ ଜ୍ଞାନ ॥

ଆବରଣ ଦୂର ହେବ, ସ୍ୱରୂପ ଜ୍ଞାନ ଲଭିବ ॥
ଗୁରୁ ପରସାଦ ଆଣ, ସେ ପଦ ହେଉ ନିବାସ ॥

ଆସ ଆସ ଭାଇ, କିଏ ଅଛ କାହିଁ
ଉଚ୍ଛୁର ନ କର ଆସ,
ବାଣ୍ଟିନେବା ପାଇଁ ପିତୃ ଅରଜିତ
ଯତ୍ନେ ସୁରକ୍ଷିତ ଧନ ॥

ଧନ ମଧ୍ୟେ ଶ୍ରେଷ୍ଠ ଧନ, ଗୁରୁଧନ, ଗୁରୁଧନ ॥
ଜ୍ଞାନ ମଧ୍ୟେ ଶ୍ରେଷ୍ଠ ଜ୍ଞାନ, ଆତ୍ମଜ୍ଞାନ, ଆତ୍ମଜ୍ଞାନ ॥
ଦାନ ମଧ୍ୟେ ଶ୍ରେଷ୍ଠ ଦାନ, ଆତ୍ମାର ସ୍ୱରୂପ ଦାନ ॥
ଏହା ଧର୍ମ ସନାତନ, ଆତ୍ମଜ୍ଞାନର ସନ୍ଧାନ ॥
ବାଣ୍ଟିନିଅ ବାଣ୍ଟିନିଅ, ଗୁରୁଙ୍କୁ ଦକ୍ଷିଣା ଦିଅ ॥
ପ୍ରକୃତ ଦକ୍ଷିଣା ଦିଅ ଦେହ ମନ ପ୍ରାଣ ଦିଅ ॥
ହୀନ ସେବା ନ ଆଚର, ଗୁରୁ ସେବା ନିତ୍ୟ କର ॥
ଗୁରୁ ପରସାଦ ନିଅ, ସକଳେ ବିତରି ଦିଅ ॥
ଜୟ ଗୁରୁ ଜୟ ଗାଅ, ଗୁରୁ ପାଦେ ମନ ଦିଅ ॥
ଜୟ ଗୁରୁ ଜୟ ଗୁରୁ, ଗୁରୁ ନାମ କଳ୍ପତରୁ ॥
ଜୟ ଗୁରୁ ଜୟ ଗୁରୁ, ଗାଅ ସଦା ଜୟ ଗୁରୁ ॥
ଜୟ ଗୁରୁ ଜୟ ଗୁରୁ ଜୟ ଗୁରୁ ଜୟ ଗୁରୁ ॥



## * କୀର୍ତ୍ତନ *

ଜୟ ଜୟ ଗୁରୁ ବାଂଛା କଳ୍ପତରୁ
ଜୟ ମୋ ନିଗମ ଆନନ୍ଦ,
ସ୍ମରଣ ମଙ୍ଗଳ ଶ୍ରବଣ ମଙ୍ଗଳ
କୀର୍ତ୍ତନ ମଙ୍ଗଳ ଗୋବିନ୍ଦ ॥ ୧ ॥

ଜୟ ନିଗମ ଆନନ୍ଦ ଜୟ ଗୁରୁ ଗଉରାଙ୍ଗ ॥
ଜୟ ଗୁରୁ ନାରାୟଣ ଶିଷ୍ୟ ଭକ୍ତ ବନ୍ଧୁ ପ୍ରାଣ ॥
ଜୀବନ ମୁକତି ଦାନୀ ଜୀବର ଜନ୍ମତ କାମୀ ॥
ଜୟ ଗୁରୁଦେବ ସ୍ୱାମୀ ପରମ ଭକତ ଜ୍ଞାନୀ ॥ ୦ ॥

ଭକତି କ୍ଷୀରରେ ଜ୍ଞାନ ଖଣ୍ଡ ଯୋଗେ
କରିଅଛୁ ସୁମଧୁର,
ସନାତନ ଧର୍ମ ମୁଖପାଠ ହୋଇ
ଗୁରୁଘର ଆଦରିଲ ॥ ୧ ।

ଶଙ୍କର ଗୌରାଙ୍ଗ ରୂପ, ଶ୍ରୀରାମ କୃଷ୍ଣ ସ୍ୱରୂପ ॥
ମିଳାଇ ଗଙ୍ଗା ଯମୁନା, ଜ୍ଞାନ ଭକତି ସାଧନା ॥
ତନ୍ତ୍ର ଯୋଗ ଆଦ ସାଧି, ଲଭି ନିର୍ବିକଳ୍ପ ସିଦ୍ଧି ॥
ଗୁରୁ ଘରେ ଜାଗି ଅଛ ଶିଷ୍ୟେ ଭକ୍ତେ ଜଗାଉଛ ॥

ସ୍ୱାମୀ, ସରସ୍ୱତୀ, ସାରସ୍ୱତ ପଥ,
ସାରସ୍ୱତ ସଂଘ ଈଶ,
ସାର୍ବଭୌମ ଗୁରୁ ଗୁରୁ ପ୍ରସାଦେ
ଚରଣ ତଳରେ ରଖ ॥ ୨ ॥

ଶ୍ରୀଚରଣେ ଦଅ ଠାବ, ଲଭିବ ସେ ଚରଣ ନାବ ॥
ଭବ ସିନ୍ଧୁ ଯିବ ତରି, ତବ ଜସୁ ବାରି ବାରି ॥
ଚରଣ ସେବାରେ ମନ, ନାହିଁ ଲୋଡ଼ା ଅନ୍ୟ ଧନ ॥
ଗୁରୁ ପ୍ରସାଦ କାମନା, ଗୁରୁ ପ୍ରସାଦେ ରସନା ॥

ପୂର୍ତ୍ତିକର—

ଏ ମୋର କାମନା ପୂର୍ଣ୍ଣ କର ॥
ପତିତ ଅଧମେ ଦୟା କର ॥
ଦୟା ମାତ୍ର ମୋ ସମ୍ବଳ ॥
ଗୁରୁ ପରସାଦେ ଦୟା କର ॥



## * ସୁଖ ତତ୍ତ୍ୱ *

କେଦାର—ଚନ୍ଦ୍ରକେଳି ବାଣୀ

ସୁଖ ପାଇଁ ଦିନା,

ଜନ ଗଣ ଖଟି ଟାଣୁଅଛୁ ଘଣା ॥ ୦ ॥
ସୁଖଟି ଅଟଇ ମୂଳ କାମନା,
ଧରମରୁ ସୁଖ ଉପୁଜେ ଦିନା ॥ ୧ ॥
ଧରମ ବୀଜ ଭୁ କରମେ ପୋତ,
ବୀଜୁ ଅଙ୍କୁରବ କଳପ ବଟ ॥ ୨ ॥
କଳପ ବଟର ଗୁରୋଟି ଡାଳେ,
ଧର୍ମ, ଅର୍ଥ, କାମ, ମୋକ୍ଷଟି ଫଳେ ॥ ୩ ॥
ଧରମ ପଥରେ ଅର୍ଥ ଆଗମ,
ଅର୍ଥାଗମେ ହେଉ କାମନା ପୂର୍ଣ୍ଣ ॥ ୪ ॥

କାମନା ପୂରିଲେ ମୋକ୍ଷ ପ୍ରାପତ,
ଦେଖ ଧର୍ମ ପଥ ବଡ଼ ପ୍ରଶସ୍ତ ॥ ୫ ॥
ଭାବୁଥିବୁ ମନେ କେଉଁ କରମ,
ଆଚରିଲେ ହେବ କରମେ ଗଣ୍ୟ ? ॥ ୬ ॥
ହେତୁ କହି ଶୁଣ କରମ ତତ୍ତ୍ୱ,
ଯେଉଁ କର୍ମ କଲେ ହେବୁ ପବିତ୍ର ॥ ୭ ॥
କର୍ମ, ବିକର୍ମ, ଅକର୍ମ ଏ ତିନ,
କର୍ମ ଭେଦେ କହିଅଛନ୍ତି ମୁନି ॥ ୮ ॥
ବିହିତ କର୍ମକୁ କରମ କହି,
ବାରଣ କର୍ମକୁ ବିକର୍ମ କହି ॥ ୯ ॥
(ଯେବେ) କରମ ଫଳକୁ ତ୍ୟାଗ କରିବୁ,
ଅକର୍ମରେ ଲେଖା ହେବରେ ବାବୁ ॥ ୧୦ ॥
ବିକର୍ମେ ନୋହିବୁ ରତ କଟନ,
କର୍ମେ କରିବୁ ଅକର୍ମ ଦର୍ଶନ ॥ ୧୧ ॥
ଅକରମେ ହେଲେ କର୍ମ ଦର୍ଶନ,
ତୁଟିଯିବ ତୋର ଭବ ବନ୍ଧନ ॥ ୧୨ ॥
କରମ କରିଲେ ହଟିବୁ ସୁଖ,
ବିକରମେ ଯାର ହୋଇବ ଦୁଃଖ ॥ ୧୩ ॥
ଅକରମ ଫଳେ ମୁକତି ଲଭ,
ଜୀବ ପକ୍ଷେ ତାହା ପରମ ଭାବ ॥ ୧୪ ॥
କର୍ମ ବିକର୍ମରେ ବନ୍ଧନ ଥାଇ,
ଅକରମ କଲେ ବନ୍ଧନ ନାହିଁ ॥ ୧୫ ॥
କରମେ ସୁବର୍ଣ୍ଣ ଶିକଳେ ବନ୍ଧା,
ବିକରମେ ଲୌହ ଶୃଙ୍ଖଳ ଯୋଗା ॥ ୧୬ ॥

ଲୌହ ସୁବର୍ଣ୍ଣରେ କି ଯାଏ ଆସେ,
ଅକରମ କରି ବନ୍ଧନ କାଟେ ॥ ୧୭ ॥
ଆଚରିବୁ ଯେବେ ଗୁରୁ କରମ,
ଅକରମେ ଯାଇ ହେବରେ ଗଣ୍ୟ ॥ ୧୮ ॥
ତୋର ସୁଖ ଦୁଃଖେ ନୁହେଁ କେ ଦାୟୀ,
ପୂର୍ବ କୃତ କର୍ମଫଳ ଏ ଦୁଇ ॥ ୧୯ ॥
ସୁକର୍ମର ଫଳେ ସୁଖ ପ୍ରାପତ
କୁକର୍ମେ ଧରୁଛୁ ଦୁଃଖର ହାତ ॥ ୨୦ ॥
ଅତୀତ ପାଇଁ ନ କର ଶୋଚନା,
ଏବେଠାରୁ କର କର୍ମ ଭାବନା ॥ ୨୧ ॥
ସୁଖ ବୀଜ ପୋତ କରି ସୁକର୍ମ,
ଧର୍ମ ସୁକର୍ମ, ଅଧର୍ମ କୁକର୍ମ ॥ ୨୨ ॥

ପ୍ରଥମେ କରମେ ଧରମ ସଞ୍ଚ,
ଧର୍ମ ଧନେ ପରମ ଧନେ ଭେଟ, ॥ ୨୩ ॥
ଗୁରୁ କରମକୁ ଅକର୍ମ କହି,
କରୁଅଛୁ ମୁହିଁ ଗୁରୁଙ୍କ ପାଇଁ ॥ ୨୪ ॥
ନିଜ ସୁଖ ଭୋଗ କାମନା ନାମ,
କୃଷ୍ଣ ସୁଖ ଭୋଗ ନାମଟି ପ୍ରେମ ॥ ୨୫ ॥
ଗୁରୁ କରମ କିରୂପ ପଦାର୍ଥ,
ବୁଝାଇ ଦେଉଛନ୍ତି ଶୁଣରେ ପାର୍ଥ ॥ ୨୬ ॥
ସାରସ୍ୱତ ସନାତନ ଧର୍ମର,
ପ୍ରଚାର, ପ୍ରସାର ସତ୍ ଶିକ୍ଷାର ॥ ୨୭ ॥
ନାରାୟଣ ଜ୍ଞାନେ ଜୀବର ସେବା,
ସ୍ଥାନେ [illegible] ଉତ୍ସବ [illegible] ପୂଜା ॥ ୨୮ ॥

ଏହି କର୍ମ ଘାଇ ଗୁରୁ କରମ,
ଏ କର୍ମେ ମୋଚନ ଭବ ବନ୍ଧନ ॥ ୨୯ ॥
ସାରସ୍ୱତ ସଂଘ ଆଦର୍ଶ ଏହି,
ଶ୍ରୀଗୁରୁ ଆଦେଶ ପାଳରେ ଘାଇ, ॥ ୩୦ ॥
ଶ୍ରୀଗୁରୁ ଆଦେଶ ପ୍ରତିପାଳନ,
ଅଟେ ଘାଇ ଶିଷ୍ୟ ଭକ୍ତର ଧର୍ମ ॥ ୩୧ ॥
ଗୁରୁଙ୍କ କର୍ମରେ ସଦାପ୍ତ ହୁଅ,
ପରମ ଧନରେ ମନ ବଳାଅ ॥ ୩୨ ॥
କର୍ତ୍ତବ୍ୟ କରମ ବେଦ କରମ,
ଏ କର୍ମ ଫଳେ ଲଭ ହୁଅଇ ଧର୍ମ ॥ ୩୩ ॥
ପିତା, ପୁତ୍ର, ମାତା, କନ୍ୟା, ଭାର୍ଯ୍ୟା,
ପଶୁ, ପ୍ରତିବେଶୀ ସେବା କରିଯା ॥ ୩୪ ॥
କେଉଁଘରେ ତାଙ୍କ ସେବା କରିବୁ,
ଯେ ଫଳେ ପରମ ପଦ ଲଭିବୁ ॥ ୩୫ ॥
ଏହି ପରିବାର ଠାକୁରଙ୍କର.
ମୁହିଁ ତାଙ୍କର ସେବକ ମାତର ॥ ୩୬ ॥
ପରିଜନଙ୍କର ସେବା ଧାର୍ଯ୍ୟ ଛି,
ମୋହ ହସ୍ତେ ହୋଇଅଛୁ ଅର୍ପିତ ॥ ୩୭ ॥
(ସତ୍) ପଥେ ସାଧ ମତେ ଧନ ଅର୍ଜ୍ଜିବୁ,
ଅନ୍ନ, ବସ୍ତ୍ର, ଗୃହ ତାହାଙ୍କୁ ଦେବୁ ॥ ୩୮ ।
ସେମାନେ ଅଟନ୍ତି ଗୁରୁଙ୍କ ଜନ,
ଦୂର କରିବୁ ତାହାଙ୍କ କଷଣ ॥ ୩୯ ॥
ପିତା, ମାତା ଆଶୀର୍ବାଦର ଫଳେ,
ଗୁରୁ କୃପା ବାବୁ ଲଭିବୁ ହେଳେ ॥ ୪୦ ॥

ମାତ ସେବା ନ କରିବୁ ଜୀବନେ,
ନିତ୍ୟ ସେବୁଥିବୁ ଗୁରୁ ଚରଣେ ॥ ୪୧ ॥
ଗୁରୁ, ଗୁରୁଜନ, ଦେବ, ବ୍ରାହ୍ମଣ,
ଚିହ୍ନି କରୁଥିବୁ ପଦ ସେବନ ॥ ୪୨ ॥
ସେବା ପଥ ଘାଇ ଭକତି ପଥ,
କଳିରେ ଚୈତନ୍ୟ କଲେ ପ୍ରକଟ ॥ ୪୩ ॥
ସକଳେ ଏହି ପଥେ ଅଧିକାରୀ,
ଯୋଗୀ, ଭୋଗୀ ବାଳକ, ବ୍ରହ୍ମଚାରୀ ॥ ୪୪ ॥
ଏହି ରାଜପଥ ବଡ଼ ପ୍ରଶସ୍ତ,
ବଡ଼ ଦାଣ୍ଡେ ଚାଲେ ଭକତି ରଥ ॥ ୪୫ ॥
ନାମ ରଜ୍ଜୁ ଟାଣି ଶ୍ରେଷ୍ଠ ଭକତ,
ଚଳାଇ ନିଅନ୍ତି ଦାଅଁଙ୍କ ରଥ ॥ ୪୬ ॥
ସେହି ଭକତଙ୍କ ଚରଣ ରେଣୁ,
ଗୁରୁ ପ୍ରସାଦର ମଞ୍ଜୁଳ ଚୁମୁ ॥ ୪୭ ॥
ଗୁରୁ ପରସାଦେ ପୂରୁ କାମନା,
ଗୁରୁ, ଗୁରୁଜନେ କରେ ବନ୍ଦନା ॥ ୪୮ ॥
ଗୁରୁ କରମେ କର ଅଧିକାରୀ,
କର ବଡ଼ ଦାଣ୍ଡେ ବୁଲ ଭିକାରୀ ॥ ୪୯ ॥
ଗୁରୁ କର୍ମେ ହୋଇ ରତଯେ
ଦେହେ ମନେ ପ୍ରାଣେ ଗୁରୁ ପରସାଦ,
ହୋଇବ ଗୁରୁ ସେବକ ଯେ— ॥ ୫୦ ॥



## ✱ ଉପହାର ✱

ଯାହାଅଛି ମୋର ସକଳ ତୁମରି,
ଢଆ ଦରବରେ ମୁହିଁ ଅଧିକାରୀ,
ସରବ ତୁମକୁ ଦେଲି । ॥ ୧ ॥

ସୁଗୁଣ, କୁଗୁଣ, ଭୂଷଣ, ଦୁଃଷଣ,
ତୁମେ ଦେଇଅଛ ତୁମ ସରଜନ,
ସରବ ତୁମକୁ ଦେଲି । ॥ ୨ ॥

ଟାକଣ୍ଟି ନେବାକୁ ସେବାକୁ ଆଦରି,
ସେବାଦାସ ପଣେ କର ଅଧିକାରୀ,
ତୁମ ସେବା ଆଦରିଲି । ॥ ୩ ॥

ତୁମେ ବସିଥିବ ନୀଳାଦ୍ରୀ ମଣ୍ଡପେ,
ଶ୍ରୀଚରଣ ପ୍ରାନ୍ତେ ରଖିଥିବ ମୋତେ,
କରି ତବ ସେବାକାରୀ ॥ ୪ ॥

ସେବକ ଜନରେ କରୁଣା ସଞ୍ଚର,
ସଞ୍ଚିଦ ନାହିଁ କରୁଣା ଭଣ୍ଡାର,
ତୁମରି ଶରଣ ନେଲି । ॥ ୫ ॥

ସେବକ ଜନର କରୁଣା ଭରଷା,
ଝୁରୁଥାଉ ଯେସନ୍ତେ ଶ୍ରାବଣୀ ବରଷା,
ଅନୁକୂଳ କୃପାବାରି । ॥ ୬ ॥

ଧାଉଁଥିବ ଯେସନ୍ତେ ଝଟ ପେଶକାରୀ
ସେବକ ପଣରେ ହୋଇ ଅଧିକାରୀ,
ଗୁରୁ ପରସାଦ ବୋଲି ॥ ୭ ॥



# ❊ ଅପରାଧ କ୍ଷମାପନ ସ୍ତୋତ୍ର ❊

ଆଦ୍ୟରେ କରମ ଫଳେ　　　　ଜନ୍ମ ଯେବେ ଧରାତଳେ
ଲବ୍ଧ କେତେ ଗର୍ଭର ବେଦନା,
ମଳ-ମୂତ୍ର ମଧ୍ୟେ ବାସ　　　　ଘନ ଘନ ନାଭିଶ୍ୱାସ
କହିନୁହେଁ କଠୋର ଯାତନା ।
ବର୍ଣ୍ଣିବେ ସେ ଦୁଃଖରାଶି　　　　କିପରି ହେବ ପ୍ରୟାସୀ
ଶକ୍ତିହୀନ ମୁହିଁ ମୂଢ଼ ଅନ୍ଧ,
ସର୍ବ ଅପରାଧ ମମ　　　　କ୍ଷମ ଗୁରୁଦେବ କ୍ଷମ
ଜୟଗୁରୁ ଶ୍ରୀମତ୍ ନିଗମାନନ୍ଦ ॥　　　　॥ ୧ ॥

ବାଲ୍ୟକାଳେ ଦୁଃଖମୟ　　　　ଅପବିତ୍ର ମମକାୟ
ସ୍ତନ୍ୟପାନେ ପ୍ରବଳ ପିପାସା,
ଇନ୍ଦ୍ରିୟ ବିଷୟ ଭୋଗେ　　　　ଅବିଶୁଦ୍ଧ ଅନୁରାଗେ
ନିତ୍ୟ ମମ ଅନ୍ତରର ଆଶା ॥
ଜଡ଼ତାର ବଶୀଭୂତ　　　　ଇନ୍ଦ୍ରିୟ ଅସଂଯତ
ସ୍ମର ନାହିଁ ମୁହିଁ ମୂଢ଼ ଅନ୍ଧ,
ସର୍ବ ଅପରାଧ ମମ　　　　କ୍ଷମ ଗୁରୁଦେବ କ୍ଷମ
ଜୟଗୁରୁ ଶ୍ରୀମତ୍ ନିଗମାନନ୍ଦ ॥　　　　॥ ୨ ॥

ଯୌବନ ଇନ୍ଦ୍ରିୟ ବଶେ　　　　ପ୍ରମତ୍ତ ବିଷୟ ବିଷେ
ଆଶୀର୍ବିଷ　　ମନ ଦେହ ।
ବିନଷ୍ଟ ବିବେକ ଜ୍ଞାନେ　　　　କଳୁଷ ମଳିନ ପ୍ରାଣେ
ଦାରା ପୁତ୍ର ସମ୍ପଦର ମୋହ ॥
ଅବଶେଷେ ପ୍ରୌଢ଼କାଳେ　　　　ଗର୍ବ, ମାନ, କର୍ମଜାଳେ
ଜ୍ଞାନହୀନ, ମୁହିଁ ମୂଢ଼ ମନ୍ଦ,
ସର୍ବ ଅପରାଧ ମମ　　　　କ୍ଷମ ଗୁରୁଦେବ କ୍ଷମ
ଜୟଗୁରୁ ଶ୍ରୀମତ୍ ନିଗମାନନ୍ଦ ॥　　　　॥ ୩ ॥

ବାର୍ଦ୍ଧକ୍ୟ ରୋଗ ସନ୍ତାପେ      ବିୟୋଗାନ୍ତ ପରିତାପେ
ଜୀର୍ଣ୍ଣ, ଶୀର୍ଣ୍ଣ ସର୍ବେନ୍ଦ୍ରିୟ କାୟା,
ତଥାପି ବର୍ଦ୍ଧିତ ହୃଦେ      କଳୁଷ ଭ୍ରମ ପ୍ରମାଦେ
ବିଷପୂର୍ଣ୍ଣ ବିଷୟର ମାୟା ।
ମିଥ୍ୟା ମୋହ ଅଭିଳାଷେ      ସଂସାର ଘୋର ବିଳାସେ
ଗୁରୁ ଧ୍ୟାନ ଜ୍ଞାନ ରତ ଅନ୍ଧ,
ସର୍ବ ଅପରାଧ ମମ      କ୍ଷମ ଗୁରୁଦେବ ମମ
ଜୟତୁ ଶ୍ରୀମତ୍ ନିଗମାନନ୍ଦ      ॥ ୪ ॥
ଶକ୍ତିହୀନ ସ୍ମାର୍ତ୍ତ କର୍ମେ      ସୁଗହନ ଶ୍ରୌତ ଧର୍ମେ
ବ୍ରହ୍ମମାର୍ଗ ତତ୍ତ୍ୱ ଅବିଦିତ,
ପାପେ ଲିପ୍ତ ପ୍ରତିଦିନ      ଅବିବେକୀ ମମ ସମ
ନରକୂଳେ ନିତାନ୍ତ ଗର୍ହିତ ।
ଅନାସ୍ଥା ଧର୍ମର ପ୍ରତି      ଅବାଧ ଇନ୍ଦ୍ରିୟ ଗତି
ପରଚର୍ଚ୍ଚା ନିନ୍ଦାରେ ଆନନ୍ଦ,
ସର୍ବ ଅପରାଧ ମମ      କ୍ଷମ ଗୁରୁଦେବ କ୍ଷମ
ଜୟତୁ ଶ୍ରୀମତ୍ ନିଗମାନନ୍ଦ ।      ॥ ୫ ॥
ତୃଷାକାଳେ ସ୍ନାନ କରି      ସୁପବିତ୍ର ଗଙ୍ଗା ବାରି
ଆଣିନାହିଁ ତୁମ ସ୍ନାନ ପାଇଁ,
କାନନ ବିଟପୀ ପୁଷ୍ପ      ଆହରଣେ ଅସମର୍ଥ
ବିଧିମତେ ପୂଜା କରିନାହିଁ ।
ସରୋବର ଶତଦଳେ      ପୂଜ ନାହିଁ ଅବହେଳେ
ଅର୍ପି ନାହିଁ, ଧୂପ, ଦୀପ, ଗନ୍ଧ,
ସର୍ବ ଅପରାଧ ମମ      କ୍ଷମ ଗୁରୁଦେବ କ୍ଷମ
ଜୟତୁ ଶ୍ରୀମତ୍ ନିଗମାନନ୍ଦ ॥      ॥ ୬ ॥

ଦୁଗ୍‌ଧ କମ୍ବା ମଧୁ, ଘୃତେ ଶର୍କରା ଖଣ୍ଡ ନବାତେ
କରିନାହିଁ କେବେ ଆପ୍ୟାୟନ,
ଶ୍ରୀଅଙ୍ଗେ ଚୁଆ ଚନ୍ଦନ କେନାହିଁ ବିଲେପନ
ମୁଁ ପତିତ, ଅଧମ, ହୀନ ।
ମଧୁର କର୍ପୂର ଧୂପେ ସୁବାସ ବନ୍ଧଧ ରୂପେ
ଅର୍ପଣେ ଅକ୍ଷମ ହୀନ ମନ୍ଦ,
ସର୍ବ ଅପରାଧ ମମ କ୍ଷମ ଗୁରୁଦେବ କ୍ଷମ
ଜୟଗୁରୁ ଶ୍ରୀମତ୍‌ ନିଗମାନନ୍ଦ ॥ ॥ ୭ ॥
ମୂଳାଧାର ପଦ୍ମପଥେ ସୂକ୍ଷ୍ମମାର୍ଗେ ସହସ୍ରାରେ
ଶାନ୍ତଦେଶେ ଶାନ୍ତିର ମୂରତି,
ପ୍ରଣବ କୁମ୍ଭକ ଯୋଗେ ଇଷ୍ଟ ରୂପୀ ଅଗ୍ରଭାଗେ
କେବେ ନ ଲକ୍ଷିଛି ତବ ଜ୍ୟୋତି ।
ମୁଁ ପାମର ଅବଶ୍ୟାଧୀ ମୋହ ମୁଗ୍‌ଧ ଦରା ବାସୀ
ହତ ବୁଦ୍ଧି କର୍ମ ଅତି ମନ୍ଦ,
ସର୍ବ ଅପରାଧ ମମ କ୍ଷମ ଗୁରୁଦେବ କ୍ଷମ
ଜୟଗୁରୁ ଶ୍ରୀମତ୍‌ ନିଗମାନନ୍ଦ ॥ ॥ ୮ ॥
ଚିତ୍ତ ରଖି ଶ୍ରୀଚରଣେ ବିତ୍ତ ରାଶି ଗୀନଜନେ
ଅକାତରେ କରିନାହିଁ ଦାନ,
ବୀଜମନ୍ତ୍ର ଉଚ୍ଚାରଣେ ଅର୍ଚ୍ଚି ନାହିଁ ଶ୍ରୀଚରଣେ
କାୟ, ମନ, ବାକ୍ୟେ ଭକ୍ତିହୀନ ।
ନମ୍ର ସ୍ଥିର ଯୁକ୍ତ କରେ ସ୍ତୁତି ପରିସ୍ଫର୍ଯ୍ୟାଦରେ
ସନ୍ତୋଷଣେ ଅସମର୍ଥ ଅଛି,
ସର୍ବ ଅପରାଧ ମମ କ୍ଷମ ଗୁରୁଦେବ କ୍ଷମ
ଜୟଗୁରୁ ଶ୍ରୀମତ୍‌ ନିଗମାନନ୍ଦ ॥ ॥ ୯ ॥

ନାସାଗ୍ର ଦୃଷ୍ଟି ନିକ୍ଷେପେ    ସ୍ଥିର ଚିତ୍ତେ ଧ୍ୟାନ ନେନେ
ଇଷ୍ଟ ରୂପ ଧ୍ୟାନେ ଅସମର୍ଥ,
ଉନ୍ମତ୍ତ ଅବସ୍ଥା ମନେ    କଳି ମଳ ବିଲେପନେ
ମାୟା ମୁଗ୍ଧ ଜନ୍ମ ମମ ବ୍ୟର୍ଥ ।
ବିଶୁଦ୍ଧ ତ୍ରିଗୁଣାତୀତ    ସଦ୍‌ଗୁରୁ ଶରଣାଗତ
ଏଇ ମନେ ଥାଏ ସଦାନନ୍ଦ,
ସର୍ବ ଅପରାଧ ମମ    କ୍ଷମ ଗୁରୁଦେବ କ୍ଷମ
ଜୟତ୍ତୁ ଶ୍ରୀମତ୍ ନିଗମାନନ୍ଦ ॥    ॥ ୧୦
କି କାରଣ ଦାର-ସୁତ    ବାନ୍ଧବ ଭୃତ୍ୟ ବା ମିତ୍ର
ପରକାଳେ କେ ହେବ ସହାୟ,
ଆୟୁ ନଷ୍ଟ ଅନୁକ୍ଷଣ    କ୍ଷୟ ମ
କାଳଗ୍ରାସେ ନିତ୍ୟ ନିତ୍ୟ ଧାମ ।
ମନୋହର ଭୋଗାବଳୀ    ନଶ୍ୱର ଭଙ୍ଗୁର ବୋଲି
ତ୍ୟାଗ କର ମନ ମୂଢ଼ ଅନ୍ଧ,
ସର୍ବ ଅପରାଧ ମମ    କ୍ଷମ ଗୁରୁଦେବ କ୍ଷମ
ଜୟତ୍ତୁ ଶ୍ରୀମତ୍ ନିଗମାନନ୍ଦ ॥    ॥ ୧୧ ॥
ଅନିତ୍ୟ ସଂସାରରେ ନିତ୍ୟ    ଜ୍ଞାନ ବା ଅଜ୍ଞାନ କୃତ
ଅପରାଧ ଅସଂଖ୍ୟ ହେ ଗୁରୁ,
ସର୍ବ ଅପରାଧ ମମ    କ୍ଷମ ଗୁରୁଦେବ କ୍ଷମ
ମହା ଶକ୍ତିଧର କଳ୍ପତରୁ ।
ଦିଅ ମୋର ଶକ୍ତି ଚିତ୍ତେ    ମୋକ୍ଷ ପଥ ଦରଶିତ
ପାଉ ପ୍ରାଣ ପରମ ଆନନ୍ଦ,
ସର୍ବ ଅପରାଧ ମମ    କ୍ଷମ ଗୁରୁଦେବ କ୍ଷମ
ଜୟତ୍ତୁ ଶ୍ରୀମତ୍ ନିଗମାନନ୍ଦ ॥    ॥ ୧୨ ॥

ଆତ୍ମାର କଲ୍ୟାଣ ପାଇଁ ସତତରେ ମନ ବୁଝ
ଭଜ ଗୁରୁ ଶ୍ରୀ ନିଗମାନନ୍ଦ,
ଶ୍ରୀ ଗୁରୁ ସର୍ବସ୍ୱ ଧନ ପାନକର ମୂଢ ମନ
ଶ୍ରୀ ଶ୍ରୀ ଗୁରୁ ପଦ ମକରନ୍ଦ ।
ଗୁରୁ ପଦେ ଚିତ୍ତ ମୋର ହୁଅରେ ନିତ୍ୟ ବନ୍ଧୋର
ପରଂବ୍ରହ୍ମ ପ୍ରଦ ସଦା ବନ୍ଦ,
ସର୍ବ ଅପରାଧ ମମ କ୍ଷମ ଗୁରୁଦେବ କ୍ଷମ
ଜୟତ୍ତୁ ଶ୍ରୀମତ୍ ନିଗମାନନ୍ଦ ॥ ॥ ୧୩ ॥
ଗୁରୁବ୍ରହ୍ମା ଗୁରୁବିଷ୍ଣୁ ଗୁରୁ ମହେଶ୍ୱର ଜିଷ୍ଣୁ
ଧ୍ୟାନ ମୂଳ ଶ୍ରୀଗୁରୁ ମୂରତି,
ଗୁରୁପଦ ପୂଜା ସାର ଗୁରୁବାକ୍ୟ ମନ୍ତ୍ରାଧାର
ଗୁରୁ କୃପା ମୂଳ ମୋକ୍ଷ ଗତି ।
ଗୁରୁପିତା, ଗୁରୁମାତା ବନ୍ଧୁ ସଖା ପରିତ୍ରାତା
ସର୍ବମୟ ଭକ୍ତ ପ୍ରାଣାନନ୍ଦ,
ସର୍ବ ଅପରାଧ ମମ କ୍ଷମ ଗୁରୁଦେବ କ୍ଷମ
ଜୟତ୍ତୁ ଶ୍ରୀମତ୍ ନିଗମାନନ୍ଦ

## ପାଠ ଫଳ

ନିତ୍ୟେ ଯେହୁ ଶୁଦ୍ଧ ଚିତ୍ତେ ପଢନ୍ତି ଭକ୍ତିଭରେ,
ଅପୂର୍ବ ଶ୍ରୀଗୁରୁ ସ୍ତୋତ୍ର ଏକାଗ୍ର ଅନ୍ତରେ,
ଠାକୁର ନିଗମାନନ୍ଦ କରିଣ କରୁଣା,
ସର୍ବ ଅପରାଧ ସଦା କରନ୍ତି ମାର୍ଜନା, ॥୧॥
ସର୍ବ ଶକ୍ତି ସୁଖ ଲଭ ହୁଏ ଧରାପରେ,
ମୋକ୍ଷପଦ ପ୍ରାପ୍ତ ହୁଏ, ସଦ୍‌ଗୁରୁର ବରେ,
ଭକ୍ତି ଜ୍ଞାନ ପ୍ରଦ ଏଇ ଗାଥା ସୁଲଳିତ,
ଗୁରୁଦାସ ଅନୁଦାସ ପ୍ରାମାଦାନୁଦିତ ॥୨॥

(ନିଗମାନନ୍ଦ ଆର୍ଯ୍ୟ ଦର୍ପଣରୁ ଅନୁବାଦ)

# ଶୁଦ୍ଧିପତ୍ର

| ପୃଷ୍ଠା | ଧାଡ଼ି | ଅଛି | ହେବ |
|---|---|---|---|
| ୧ | ୨ | ଚୀର | ଚିର |
| ୧ | ୪ | ନାହିଁ | କାହିଁ |
| ୨ | ୨ | ସାହାସ | ସାହସ |
| ୨ | ୧୦ | ଜଣାଇ | ଜଗାଇ |
| ୪ | ୨୦ | ଅବଗାହାନ | ଅବଗାହନ |
| ୭ | ୫ | ଦୋଷର | ଦୋସର |
| ୮ | ୩ | ଗୁଣଗ୍ରାହ୍ମୀ | ଭାବଗ୍ରାହୀ |
| ୧୧ | ୭ | ଭରଷା | ଭରସା |
| ୧୧ | ୧୬ | ଶ୍ରବଣ | ଶ୍ରବଣେ |
| ୨୨ | ୫ | କାରଣ | ବାରଣ |
| ୨୨ | ୧୦ | ଲୋଭୀ | ଲୋଭ |
| ୨୩ | ୧୬ | ବସାଇ | ରସାଇ |
| ୨୭ | ୩ | ଅଘାମରେ | ଆଘାମରେ |
| ୩୬ | ୨୩ | ସ୍ୱକଳ | ସ୍ୱରଳ |
| ୪୫ | ୧୫ | ଭବସାଗର | ଭବସାଗରର |
| ୫୭ | ୧୦ | ହୁଅଇ | ହୁଏ |
| ୫୮ | ୧୪ | ମଞ୍ଜୁଳ | ମଞ୍ଜୁଳ |
| ୬୦ | ୯ | ବାଲ୍ୟକାଳେ | ବାଲ୍ୟକାଳ |
| ୬୦ | ୧୭ | ଯୌବନ | ଯୌବନେ |
| ୬୧ | ୧୧ | ପ୍ରତିବାଦ | ପ୍ରତିପାଦନ |

